# ଜଗନ୍ନାଥ ଚକ୍ରବର୍ତ୍ତୀଙ୍କ କବିତା

ବଙ୍ଗୀୟ କବି :
ଡକ୍ଟର ଜଗନ୍ନାଥ ଚକ୍ରବର୍ତ୍ତୀ

ଓଡ଼ିଆ ଅନୁବାଦ :
ଡକ୍ଟର ଅନନ୍ତ ଚରଣ ଶୁକ୍ଳ

**JAGANNATHA CHAKRABARTINKA KABITA**

A Collection of Oriya Translations of Bengali poems by
Dr. Jagannatha Chakrabarty

Translated by
Dr. Ananta Charana Sukla


ପ୍ରଥମ ପ୍ରକାଶ :
ରାସ ପୂର୍ଣ୍ଣିମା, ୧୯୭୫

ପ୍ରକାଶକ :
ଶ୍ରୀ ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ :
ବିନୋଦବିହାରୀ
କଟକ-୨

ପ୍ରଚ୍ଛଦ :
ଶ୍ରୀ ଜୟନ୍ତ ଚକ୍ରବର୍ତ୍ତୀ
ବିଶ୍ୱଭାରତୀ-କଳା ଭବନ, ଶାନ୍ତିନିକେତନ

ମୁଦ୍ରକ :
ଶ୍ରୀ ନୃସିଂହ ଚରଣ ପାତ୍ର
ଶାଶ୍ୱତ ମୁଦ୍ରଣୀ
୧/୪, ପ୍ରେମଚାନ୍ଦ ବରାଲ ଷ୍ଟ୍ରୀଟ
କଲିକତା-୧୨

ମୂଲ୍ୟ : ୫ ଟଙ୍କା

ସାହିତ୍ୟଗୁରୁ

ଡକ୍ଟର ସୁବୋଧ ଚନ୍ଦ୍ର ସେନଗୁପ୍ତ

ବିଦ୍ୱଦ୍‌ବରେଷୁ

ଜଗନ୍ନାଥ

ଅନନ୍ତ

# ସୂଚୀପତ୍ର

## କାରାର ପ୍ରାଥନା

ମୋତେ ଶକ୍ତି ଦିଅ, ମୁକ୍ତି ଦିଅ,
ମୋର ଏଇ ଲୌହ କାନ୍ଥରେ ହାତୁଡ଼ି ପିଟ,
ମୋର ଏଇ ଇସ୍ପାତ ଫଳକର ଶ୍ରେଣୀରେ କୁଠାର ହାଣ ।
କିଏ ତୁମେସବୁ ବାହାରେ ? କିଏ ତୁମେସବୁ ଏ ଦେଶର ମଣିଷ ?
ମୁଁ କୈଦଖାନା—ମୁଁ ଇଂରେଜର କାରାଗାର—
ମୋତେ ଧ୍ୱସ୍ତ କର
ମୋର ଏଇ ଗତଦଶନ୍ଧିର ଅସହ୍ୟ ଅଚଳାୟତନରୁ
ମୋତେ ମୁକ୍ତି ଦିଅ ।

ଦେଖିଲି, ଆସିଲେ
ସହରତଳିର କାରଖାନାର ଶ୍ରମିକ
ମୁଣ୍ଡରେ ବେଣ୍ଡେଜ୍ ବନ୍ଧା,
ଆସିଲେ ମୁହଁରେ ସ୍ଲୋଗାନ ଗାଇ ;
କାଙ୍କନ୍‌ର ଯୋଧ ପ୍ରେମ ନଙ୍କର ୯୦ ଦଳ
ବାଙ୍ଗାଳ, ତ୍ରାମବ, ଏଲେନ୍‌ବେଷ୍ଟର ଉତ୍ତେଜନାରେ ସେମାନେ ତେଜୋଦୃପ୍ତ
ଆସିଲେ ବଙ୍ଗର ଖଦିକାଳ
ଶୃଙ୍ଖଳ ପିନ୍ଧି !

ଦେଖିଲି ଆସିଲେ
ଶୀତ-ସନ୍ଧ୍ୟାରେ ଠାଏ ଠାଏ ନଗ୍ନ ଦେହ
ଦ୍ୱୀପ-ନଦୀ-ପ୍ରଗନାର ସନ୍ତାନମାନେ
ଅଣ୍ଟାରେ ଦଉଡ଼ି, ହାତର କବ୍‌ଜାରେ ବେଢ଼ି
ଆଗରେ ପଛରେ ପ୍ରହରୀ
ଶୃଙ୍ଖଳର ଅଜ୍ଞାତ ଶବ୍ଦମାନେ ଆସିଲେ ।
ଆଖିରେ ମୁହଁରେ ଅଗ୍ନିରେ ଝଲକ
ସମ୍ଭବତଃ ବଜ୍ରର ଜ୍ୟୋତି ।

ଏ କିଏ ?
କିଏ ଏମାନେ ମଶାଲ ଜାଳୁଛନ୍ତି ?
ଜେଲର ରାତିର ପ୍ରେତମୂର୍ତ୍ତିମାନେ
ସେମାନେ କିଏ ?
ଏଠି କି କାରାଗୃହ ?
ପ୍ରହରୀବେଷ୍ଟିତ ମୁଁ ପାଷାଣ ହୋଇ ଚାହିଁ ଦେଖୁଛି ;
ବନ୍ୟାରେ ଅନେଃଶ୍ୱାସୀ ହୋଇଉଠିବା ଖାଲର ଜଳ ପରି
କଳ-କଳ ହୋଇଉଠନ୍ତି ଯ୍ତାଡ଼ର ବନ୍ଦୀମାନେ,
ଫୁଲିଉଠନ୍ତି ରାଗରେ, ଫୁଲିଉଠନ୍ତି ଭୟରେ, ଆତଙ୍କରେ,
ନଦ ଛାଡ଼ି ଡେଇଁପଡ଼ନ୍ତି ଯେମାନେ
ବିଦ୍ୟୁତର ତୀକ୍ଷ୍ଣ ଫଳକ ପରି ;
କାନ୍ଥ ଡେଇଁ ବାହୁଡ଼ି ପଡ଼େ ଚିତ୍କାର
କମ୍ପିଉଠେ ରାତିର ଅନ୍ଧକାର
କମ୍ପିଉଠେ ଜାହ୍ଲଦର ଛାତ ।

ଶଇତାନ୍, ତୋ ଲୋଭର ବୋଧହୁଏ ସୀମା ନାହିଁ,
ତାକୁ ବ ଧରିଆଣିଛ ଏଠିକି ?
ବସ୍ତ୍ରହରା, ମା-ମଗ୍ନ ଝିଅଟାକୁ ବ ଶହାଦ ଦେବନ ?
ଛନ୍ନମୂଲ ମଣିଷ ଉଡ଼େଇଦେବା ତୁମର ପେଶା
ଦେଶରୁ ଦେଶାନ୍ତର,
ହୁଲିଆ କୁକୁର ପରି ପିଛା ନେଇଛ ?
ମୈତ୍ରୀର ସମ୍ମାନରେ ବ ହାତଦେବ ?

"ଖବରଦାର ଶୈତାନ୍"...
ସେ କିଏ ?...
କିନ୍ତୁ ଏଠି କାହିଁକି ?
ଏଇ ପାଷାଣପୁରୀର ପାତାଳ ଗହ୍ୱରରେ
ଆଲୋକ ହାଓ୍ୱାର ନିସୀମାର ବାହାରେ
ଏଠି କାହିଁକି ?
"ଖବରଦାର୍"...
"ସେ କିଏ ?...
"ନାଗବଛା ଦଳ ଶୁଣିଯାଅ ତୁମେ
ଏ ବିଷ ମୁଁ ଫେରେଇଦେବି ତୁମର କଣ୍ଠନାଳୀକୁ
ମନେ ରଖ
ଏ ଦେଶର ବେହୁଲାମାନେ ବିଧବା ହେଇ ନାହାନ୍ତି
ସେମାନଙ୍କର ଭେଲା ଭାସୁଛି ଶତ୍ରୁ ରକ୍ତର ଗର୍ଭିରେ
ହ୍ରଦରେ, ଜଙ୍ଗଲରେ, ପଡ଼ିଆରେ ଶତ୍ରୁ ଶିବିରର ଶୀର୍ଷରେ

ଯେମାନଙ୍କର ସଞ୍ଜୀବନ୍ ମନ୍ତ୍ର ଜଳୁଛି ଦାଉ ଦାଉ ;
ଶୈତାନ୍ ବୁଦ୍ଧି ଦେଖ
ତେଲେଙ୍ଗାନାର ଲକ୍ଷିନ୍ଦର ପାଗ ମୋଡ଼ୁଛି
କୃଷ୍ଣା ଗୋଦାବରୀର ଦୁଇ ତୀର ଦେଇ
ଦପ୍ ଦପ୍ କରୁଛି ତୁମର ସର୍ବନାଶ ।
ଏଠି ବି ଆମେ ଅଜ
ଆମର ବେଣ୍ଟେକ୍‌ବନ୍ଧା ହାତ ଉଠେଇଲୁଁ —
ଶୈତାନ୍, ଧ୍ୱଂସ ହୁଅ ।"

ଏ ଅବଦମିତ ଯନ୍ତ୍ରଣା ମୋର ଅସହ୍ୟ
ଫାଟିପଡ଼ିବ, ଫାଟିପଡ଼ିବ ମୁଁ
ଗୁଣ୍ଡଚେଙ୍ଗଡ଼ା ହୋଇଯିବି ।
ୟାର୍ଡ଼ରେ ୟାର୍ଡ଼ରେ କୁକୁର ହୁଲେଇଦେଇ
ଅଟ୍ଟହାସରେ ଭାଙ୍ଗି ପଡ଼ୁଛି ?
ରାତିର ଅନ୍ଧକାରରେ ତଣ୍ଟି ଚିପି ମାରିବାର ବୀଭତ୍ସ ଉଲ୍ଲାସରେ
ନାଚିଉଠୁଛ ?
ପିଶାଚ, ପିଶାଚ ।
ଏ ନରକ ଯନ୍ତ୍ରଣାର ଶେଷ କେବେ ?
ମୋତେ ଭାଙ୍ଗି ଦିଅ.
କିଏ ତୁମେ ଏ ଦେଶର ନଶିପ ?
ମୋତେ ଦୟା କର ।

ବାରୁଦରେ ବାରୁଦରେ ଦେଶଟା ବିସ୍ଫୋରକ ହୋଇଉଠିଲା —

ଘରେ ଘରେ ଗ୍ରେପ୍ତାର ପରଓ୍ୱାନା
ଗୋଇନ୍ଦା-ପଙ୍ଗପାଳମାନଙ୍କର ଉତ୍ପାତରେ ଆକାଶ ନିରୁତ୍ସବ,
ସଙ୍ଗୀନ୍‌ର ଖୁଣ୍ଟାରେ, ଗ୍ୟାସରେ, ଚିତ୍କାରରେ
ବିଧ୍ୱସ୍ତ ଦେଶ-ପ୍ରାନ୍ତର, ଅସ୍ଥୈର୍ଯ୍ୟ କାରଖାନା ।
ଆଉ ନୁହେଁ ।

ପାଗଳା ଘଣ୍ଟିକୁ ଶୁଣନ୍ତି କେଉଁମାନେ ?
ଶିଲଂଠୁଁ ବିଚ୍ଛୁରିପଡ଼ୁଛି ଝଡ଼ର ସଙ୍କେତ
ହିମାଳୟର ଗୁହା ଘୋ-ଘୋ କରିଉଠୁଛି
ବିନ୍ଧ୍ୟଗିରିରୁ ପଶ୍ଚିମ ଘାଟ ପର୍ଯ୍ୟନ୍ତ
ଗର୍ଜିଉଠୁଛି କ୍ରୋଧରେ ;
ମୁଁ କାରାଗାର
କ୍ଷୁବ୍ଧ ହରତାଳର ଦାବାନଳରେ ଜଳିଉଠୁଛି
ଜଳିଉଠେ ଦେଶ, ଅଗ୍ନିଗର୍ଭ ଜନତା ;
ନିରୁଦ୍ଧ କୋଠରୀରେ ସ୍ଥବିର ପିଞ୍ଜର ପିଟୁଛି
ତଳମଜ୍ଜ ଧରିଉଛନ୍ତି ଦଧୀଚିମାନେ
ଅସ୍ଥିର ହେଇଉଠୁଛି ଦିଗଦିଗନ୍ତ ରୁଦ୍ର ସଂହାରର ତାଣ୍ଡବରେ
ଶୁଣେ :
"ଆକାଶ-କୁନ୍ତଳା ଦେଶ ରୌଦ୍ର-ସ୍ନାତ ଭାରତବର୍ଷ
କାହାର ?
ମୋର ।
ବିପ୍ଳବ ସରଣୀ ବନ୍ଧା ମହାଭାରତର ଦୀର୍ଘ ଉତ୍ତରାଧିକାର

କା'ର ?
ମୋର ।
ତୋର ସର୍ବନାଶ ଆସନ୍ନ ଶୈତାନ୍ !
ମୋତେ ତୁଷାନଳରେ ଦେଇଛୁ କେତେ ବାର—
ମୁଁ ମରିନି ।
କ୍ଷେପଣାସ୍ତ୍ରରେ ଚୁମ୍ବନ ଦେଇଛୁ—
ମରିନି ।
ମୁଁ ମାନବସଭ୍ୟତାର ଉର୍ବର ସାଧକ
ମୋର ମୃତ୍ୟୁ ନାହିଁ ।
ଆଜି ତୁମେ ପୁଣି ସେଇ ହତ୍ୟାଗୁଡ଼ାକୁ ଭୁଲେଇ ଦେଇଛ
ଏଠିକା କାନ୍ଥର ଗହ୍ୱରକୁ,
ସ୍ମୃତିର ମାଇ ପିଠିରେ କଳାଦାଗ ପକେଇଛ
ଜହ୍ଲାଦ ପଠେଇଛ ଗ୍ରାମରେ ଅଣ୍ଟୁ ମ.ଡ଼ିବା ପାଇଁ,
କିନ୍ତୁ ଜାଣି ରଖ୍,
ମୋର ଆପାତ ମୃତ୍ୟୁର ଦାମ ତୋର ନିତାନ୍ତ ସର୍ବନାଶ ।
ଏଇ ନରହତ୍ୟାର ସାଜସ୍ତ୍ର କାରଖାନାର ଦରଜାରେ
ଏଇଟା କାହାର ଅଘାତ ?
ଶୁଣ୍, କାହାର ନାଦ ?
ତୋ'ର ମୃତ୍ୟୁର, ମୋ'ର ଉତ୍ଥାନର
ମୋର ପୁନରୁତ୍ଥାନର ଦୁନ୍ଦୁଭି ।"

ଶୁଣି ଶୁଣି ବଧିର ହୋଇଯିବ ;
ମୁଁ ମୁକ୍ତ ସ୍ୱାଧୀନ ;

ଯଦିଓ ମୁଁ ଗୋଲ୍ମ ଜେଲଖାନା ମାନି
ତଥାପି ଅସହ୍ୟ
ଅସହ୍ୟ ଏଇ ଅଭିଜ୍ଞତା ;
ଜାହାନ୍ନାମ୍‌ର କଳା ଅଗ୍ନିର ଏଇ ଅନ୍ଧକାରରୁ
ମୁଁ ମୁକ୍ତ ଚାହେଁ ;
ତୁମେ ହବୁ ବାହାରେ କଏ ?
କଏ ତୁମେ ଏ ଦେଶର ମଣିଷ ?
ମୋତେ ଦୟାକର, ମୋତେ ଭିଙ୍ଗି ଦଅ,
ଏଇ ରେଲ୍‌ଯନ୍ତ୍ରର ଅସହ୍ୟ ଅଚଳାୟତନରୁ
ମୋତେ ମୁକ୍ତ ଦଅ ।

# ଯୌବନ

ମୋ ଜୀବନେ ତୁମର ଆବିର୍ଭାବ
ଏକ ତରଙ୍ଗ-ଉଚ୍ଛଳ ସମୁଦ୍ର ଝଡ ପରି ।
ତୁମେ ମୋତେ ଅଧିକାର ଦେଇଛ—
ମାଟିର, ଘରର, ଘାସର, ଫସଲର, ଫୁଲର
ପୃଥିବୀ ମୋ ଝରକା ନିକଟକୁ ଟାଣି ଆଣି କହୁଛି –
ଏଇ ତୁମର ସ୍ୱତ୍ୱ ;
ଭଲପାଇବା ଧନ ମୋତେ କୋଡ଼େ
ସ୍ନିଗ୍ଧ ମହମବତୀ ପରି ଚକ୍ଷୁ ଉପହାର ଦେଇ କହୁଛି—
ଏଇ ତୁମର ସ୍ୱର୍ଗ ;
ମୋତେ ତୁମେ ନରକର ଗର୍ଭରୁ ଇନ୍ଦ୍ରପୁରୀର ଚୂଡ଼ା ପର୍ଯ୍ୟନ୍ତ
ଅବାଧ ପାଶ୍-ପତ୍ର ଦେଇଛ
ଯୌବନ, ମୁଁ ତୁମଠାରେ ଋଣୀ ।

ଝଡ଼ର କେଶରରୁ ଗୋଟିଏ ସୁନେଲୀ ବିଦ୍ୟୁତ୍ ତୋଳି ନେଇ
ମୁଁ ଯେମିତି କା ହାତରେ ଜଡ଼େଇଛି,
ରାତିର ଛାୟା ପଥରୁ ତାରା ତୋଳିନେଇ
ରଚନା କରିଛି ଆହୁରି ଏକ ଛାୟାପଥ ।

ମୋର ତୃଷ୍ଣା ଥିଲା ଝଡ଼ର
ସେ ଝଡ଼ ଉଠିନି, ତେଣୁ ମୁଁ ଅତୃପ୍ତ ;
ମୋର ଅଭିମାନ ଥିଲା ବିଦ୍ୟୁତର
ସେ ବିଦ୍ୟୁତ୍ ଏବେ ବି ମେଘରେ, ତେଣୁ ମୁଁ ଅଗ୍ନିହୀନ
ମୋର ଆକାଂକ୍ଷା ଥିଲା ସମୁଦ୍ରର
ସେ ସମୁଦ୍ର ଆଜି ବି କୂପମଣ୍ଡୂକ, ତେଣୁ ମୁଁ କ୍ଷୁବ୍ଧ ।
ମୁଁ ଚାହିଁଥିଲି ଜୀବନର ସ୍ୱପ୍ନଙ୍କୁ ମେଲିଦେବି
ପତାକା-ରଙ୍ଗୀନ ଶୋଭାଯାତ୍ରା ପରି,
ବାନ୍ଧିଦେବି ମନକୁ—ମନର ଉଦଗ୍ର, ପ୍ରୟାସୀ ଆଶା, ଆକାଂକ୍ଷାକୁ
ଗୋଟିଏ ଅବ୍ୟର୍ଥ ବିଦ୍ରୋହ ସଙ୍କେତ ।

ମୋ ହୃତ୍ପିଣ୍ଡର ଅନ୍ଧ ଗହ୍ୱର
ଭାରତବର୍ଷର ବିରାଟ ହୃତ୍ପିଣ୍ଡରେ ଭରିଉଠିଛି ;
ଏଇ ଉପବାସ-କ୍ଷୀଣ ଟିକି ହୃଦୟରେ
ଏତେ ବଡ଼ ଗହ୍ୱର ସୃଷ୍ଟି କରିଲା କିଏ ? ତୁମେ ?
ମୁକ୍ତିର ମଞ୍ଚଚନ୍ଦ୍ରାର ସ୍ୱପ୍ନରେ ଏଇ ନିପୀଡ଼ନ—ମୋର ସ୍ୱଦେଶ,
ଏଇ ବେଦନା କ୍ଷୋଭ ଆକ୍ରୋଶ— ମୋର ଅହଙ୍କାର,
ତେଣୁ ମୋର ହୃଦୟ ଆଜି ଅଗ୍ନିର ପାହାଡ଼
ଭାରତବର୍ଷର ହୃଦୟ ପରି ।

ଯୌବନ,

ତୁମେ କି ଜାଣ, ଜଳରେ ଢେଉ ଉଠେ ?

ତୁମେ କି ଜାଣ ଯେଇ ଢେଉ ପିଠିରେ ନେଇ
କଳକଣ୍ଠ କୁଆର ତା'ର ଘୋଡ଼ା ଛୁଟାଏ ?
ତୁମେ କି ଜାଣ ପାହାଡ଼ ଖାଲି ପାଷାଣ ନୁହେଁ
ଯେ ଗୋଟାଏ ଦୁର୍ଦ୍ଦାନ୍ତ ବାରୁଦ ଯା'ର ନାମ ଆଗ୍ନେୟଗିରି ?

ଯୌବନ,
ଶୁଣିଛି ତୁମ ଆକାଶରେ ଭର ଦେଇ ମଣିଷ ଦେବଦୂତ ହେଉଛି
ଗିରି କାନ୍ତାର ମରୁ ଡେଇଁ ବେଙ୍ଗମା* ପକ୍ଷୀର ଦେଶେ
ଶୂନ୍ୟକୁ ପକ୍ଷୀରାଜ କରି ସେ ଛୁଟିଛି,—
ସେ କ'ଣ ଖାଲି କାହାଣୀ ?

କାଶଗୁଚ୍ଛରେ ବନ୍ଧା ତୁମେ ଏକ ଶରତର ଅଫୁରନ୍ତ ଆକାଶ,
ତୁମର ତୀବ୍ର ସ୍ନିଗ୍ଧତାରେ ଧୋଇଦେଇଛ ମୋତେ,
ମୋତେ ପବିତ୍ର କରିଛ,
ଲଜ୍ଜା, ଭୟ ଓ ଶିହରଣର କଣ୍ଟକ ଉପରେ
କେବେ ଗୋଟିଏ ନିଷ୍ପାପ ଗୋଲାପ ଫୁଟିଉଠିଛି,
କେବେ ଯେମିତି କୁହେଳିର ପର୍ଦ୍ଦା ତୋଳି
ଝଲକାଏ ଖରା ଆସି ପରି ବିଛେଇଦେଇଛି ଘରେ ;
ଯୌବନ, ତୁମେ ମୋତେ ଜୀବନ ଦେଇଛ ।
ମୁଁ ଥିଲି ଅରଣ୍ୟ ଖଦ୍ୟୋତ
ମୋର ନିଭୃତ ଅଗ୍ନିରେ ଥିଲା ଗୁଞ୍ଜନ,

* ବେଙ୍ଗମା—ବଙ୍ଗୀୟ ରୂପକଥାର ଏକ ପକ୍ଷୀବିଶେଷ

ତୁମେ ତାକୁ କରିଛ ସଙ୍ଗୀତ, କରିଛ ଧ୍ରୁବତାରା,
ତାକୁ ପଠେଇଛ ଆକାଶର ଚନ୍ଦ୍ରକୁ, ଦେଇଛ ଦୀପ୍ତି
ଯା ଆଦର୍ଶ ପରି ସ୍ଥିର, ପ୍ରତ୍ୟୟ ପରି ଉଜ୍ଜ୍ୱଳ ।

ଆଙ୍ଗୁଳି ଅଗରେ ଝଡ଼ ତୋଳି ମୁଗ୍ଧ ଶିଳ୍ପୀ ପରି
ଏକ ଅନବଦ୍ୟ ସେତାରକୁ ତୁମେ ମଡେଇ ରଖିଛ—
ସେ ସେତାର ମୋ ଜୀବନ ;
ସୁର ତୋଳିଛ ବିଦ୍ରୋହର, ବିଦ୍ୟୁତର, ବନ୍ୟାର—
ସେ ଏକ ଅପୂର୍ବ ସମ୍ମୋହନ ।
ହେ ଯୌବନ, ହେ ଯାଦୁକର, ହେ ମୋର ନେତା,
ଜୀବନର ଉଚ୍ଛଳ ମିଳିତ ଶୋଭାଯାତ୍ରା ଦହ୍ୱତ ମୋତେ ମିଶାଅ
ଯେଉଁ ଶୋଭାଯାତ୍ରାର ଆଦ ନାହିଁ,
ଅନ୍ତ ନାହିଁ ।

ମୋର ତୃଷ୍ଣା ଝଡ଼ର
ସେ ଝଡ଼ ଉଠିନି, ତେଣୁ ମୁଁ ଅତୃପ୍ତ ;
ମୋର ଅଭିମାନ ବିଦ୍ୟୁତର
ସେ ବିଦ୍ୟୁତ ଏବେ ବି ମେଘରେ, ତେଣୁ ମୁଁ ଅଭିମାନୀ ;
ମୋର ଆକାଙ୍କ୍ଷା ସମୁଦ୍ରର
ସେ ସମୁଦ୍ର ଆଜି ବି କୂପମଣ୍ଡୂକ, ତେଣୁ ମୁଁ କ୍ଷୁବ୍ଧ ।

# ମହାଦିଗନ୍ତ

—ଦ୍ୱିତୀୟ ସର୍ଗ—

॥ ମନ୍ତ୍ରଦ୍ରଷ୍ଟାରଃ ॥

ଯୋଗାସନେ ଧ୍ୟାନୀ ବସିଛନ୍ ।
କଲ୍ୟାଣର ମନ୍ତ୍ର-ରଚୟିତା, କର୍ମ, ଜ୍ଞାନେ ।
ଏ କାଳର ନବ ଅଙ୍ଗିରସ ଆଇନଷ୍ଟାଇନ୍
ମନ୍ତ୍ର ପଢ଼ି ଶୁଣାଇଲେ—

$mc^2 = e$ ( ଏମ୍-ସି ସ୍କୋୟାର ସମାନ ଇ )
ମଙ୍ଗଳେ କି ଶନିର ବଳୟେ
ଚନ୍ଦ୍ରର ସେପାରେ କମ୍ବା ଗ୍ରହାପଥେ
ନେଇଯାଏଁ ତୁମ ଗ୍ରୁଡ଼ପତ୍ର
ପୁଣି ତୁମରି ହିଁ ବୀଜମନ୍ତ୍ରେ କାଳଜୟୀ ରକେଟ ଉଡ଼ଏଁ
ସୌରତେଜକୁଁ ଆଣେ ପୁଣି ନବତେଜ, ପରମାଣୁଁ ଭ୍ରୂଣ—ନବଜୀବନର
ସଭ୍ୟତାକୁ ଭାଙ୍ଗି ଗଢ଼େ ମୁହିଁ ଅଳ୍ପ'ଦିନ
ତୁମ ଧ୍ୟାନ ଜ୍ଞାନ ଆଉ କର୍ମର ମାୟାବୀ ଦୀପ ଜାଳି
ଅଶ୍ଚର୍ଯ୍ୟ ସକାଳ ଆଣେ ଆଶ୍ଚର୍ଯ୍ୟ ସଂସାର ।

ଯହୁଁଠାରୁ ସତ୍ୟ ଇତିହାସେ
ଦିଗନ୍ତର ଯୂଟେ ପିଆ,
ଯହୁଁଠାରୁ କଳ୍ପନା-ରଙ୍ଗୀନ ମାୟାମୟ
ଯହୁଁଠାରୁ ସାର୍ଥକ ବାସ୍ତବ ।
ଯଦି କେଉଁ ଦେଶ ଥାଏ ତେଜ ଯାର ନାମ
ଯଦି କେଉଁ ଗଡ ଥାଏ ଇଥରେ ଯା ସ୍ଥିର
କେନ୍ଦ୍ର, ଏବଂ ଚକ୍ରନେମି ସୃଷ୍ଟି ସ୍ଥିତି ପ୍ରଳୟର—
ତେବେ ସେଇ ଅପୂର୍ବ ବାସ୍ତବ ସତ୍ୟକୁ ଜାଣେ
ତୁମର ହିଁ ସାନ୍ନିଧ୍ୟ ବଳେ,
ତୁମ ଆଡ଼େ ଆଖି ମେଲି କୃତାଞ୍ଜଳିପୁଟେ କହେଁ
'କସ୍ମୈ ଦେବାୟ ହବିଷା ବିଧେମଃ' ।

# ଗୌତମ,
# ଗାନ୍ଧୀ
# ଓ
# ସକ୍ରେଟିସ

ବାଣବିଦ୍ଧ ଜୀବନକୁ ନେଇ ବସିଅଛ
ନବୀନ ଗୌତମ ବୁଦ୍ଧ ମୁହିଁ
ତପସ୍ୟାତନ୍ମୟ—
'ମୋର ଏ ହଂସ' ।
ମୂର୍ଖ ! ତୁମେ ଦେବଦତ୍ତ, ଦୂରଯାଅ
ଏ ମରାଳ ଛୁଇଁବାକୁ ଦେବନି ମୁଁ କାରେ ।
ତୁମର ନିଃଶ୍ୱାସେ କମ୍ପେ ଡ୍ରାଗନର ହସ
ଧନୁର୍ବାଣେ ହରେଣିମା, ଭ୍ରୂକୁଟିରେ ମନ୍ୱନ୍ତର-ରେଖା
ଜ୍ୟାର ଟଙ୍କାରେ ଶୁଣେ ଆର୍ତ୍ତନାଦ,
ନିର୍ଯାତିତ ମନୁଷ୍ୟର କଠିନ ଯନ୍ତ୍ରଣା ।
ତୁମେ ମୂର୍ଖ ନିର୍ବାପିତ ଦୀପ,
ତୁମର ନରକ-ଗର୍ଭେ ଜଳିଯିବ
ମଣିପଦ୍ମ-ଆରକ୍ତ ଆଲୋକ

ଆବେଗ-ଉଚ୍ଛ୍ୱଳ,
ଏଇ ପଣ ।
ଘୁଞ୍ଚିଯାଅ—
ସଗର୍ବରେ ଯିବ ଏଇ ହଂସ ।

ହା ରାମ ! ହା ପିତଃ !
ଏ ମୋର ହୃଦୟେ ଏଇ ବୁଲେଟ କି ପ୍ରେମର ଆଘାତ ?
ଯେଉଁହେତୁ ଏମାନେ ଅଜ୍ଞ ତେଣୁ କି ଏ କଣ୍ଟକ-ମୁକୁଟ ?
ତେଣୁ କି ବିଷାକ୍ତ ବାୟୁ, ନିର୍ବାଣ ଆଲୋକ ?
ବୁଲେଟ-ବିଦ୍ଧ ଏ ମୋ'ର ହୃଦୟ
ନେଇଯିବ ଦିଗନ୍ତର ପାରେ
ମୋହର ଉତ୍ଥାନ ଲଗ୍ନେ
ମାଟିର ପୃଥିବୀ ଛାଡ଼ି ଯେବେ
ମୃତ୍ୟୁର ସମୁଦ୍ରେ ମୁହିଁ କଲମ୍ବସ୍,
ମୃତ୍ୟୁଞ୍ଜୟୀ,
ଜୀବନର, ଭୂୟୋ ଜୀବନର ଦୂତ ।
ଜାଣେ ମୃତ୍ୟୁ କେବେ କେବେ ଜୀବନର ବୀଜ, ଅମୃତ ;
ସେହି ମୃତ୍ୟୁ, ସକ୍ରେଟିସ୍, ତୁମର ଗରଳଖଣ୍ଡ
ଯେଇ ମୃତ୍ୟୁ ପୁଣି ମୋ ପିପାସା—
ମହାକାଶେ ମୋ'ର ଉତ୍ସାହ
ମହାକାଳେ ମୋ'ର ପ୍ରେରଣା ।

# ଶାନ୍ତନୁ-ଶ୍ୟାମଳୀ

କଲେଜ ଷ୍ଟ୍ରୀଟ ମୋଡ଼ରେ ସଦ୍ୟ ପାଶ୍‌କରା ବେକାର ଶାନ୍ତନୁ ;
କପାଳେ କ୍ଳାନ୍ତିର ଦ୍ୟୁତି ମ୍ଳାନ,
ପକେଟ ଅପେକ୍ଷାକୃତ ଅନୁଦାର,
ଓ ଆଖିରେ ଅନ୍ୱେଷା, କିନ୍ତୁ ପ୍ରତ୍ୟୟର ଦାମ ବା କେତେ ?
ଏଇତ ସେଦିନ ବି କ୍ଲାସରେ "ଟ୍ରାଜେଡି" "କମେଡି" ନେଇ
କେତେ ତଥ୍ୟଯୁକ୍ତି-ଜାଲ ବିଛେଇଛି
କଫି ହାଉସର ଉଷ୍ମ ଟେବୁଲରେ ତୋଳିଛି ଝଡ଼,
ଆରିଷ୍ଟଟଲରୁ ଆନନ୍ଦ ବର୍ଦ୍ଧନ
ଉଦ୍ଧୃତ କରିଛି ଅନର୍ଗଳ,
ଶିଳ୍ପ ଏବଂ ଜୀବନ ମଝିରେ କେତେ ସେତୁ କେତେ ବ୍ୟବଧାନ
ଖୁଣ୍ଟି ନାଣ୍ଟି କରିଛି ବିସ୍ତର
"ରଚନାଟି ଅନବଦ୍ୟ"—କହିଛନ୍ତି ପ୍ରଫେସର ସେନ ;
"ଅନବଦ୍ୟ"—କହିଛି ଶ୍ୟାମଳୀ ଲାଇବ୍ରେରୀ ଦ୍ୱାରେ
ମୃଦୁ ହସି ଭେନିଟି ବେଗ୍‌ର ଷ୍ଟ୍ରାପ୍‌ରେ ଅଙ୍ଗୁଳି ବୁଲେଇ
"ଅନବଦ୍ୟ ଲେଖା" । ଧନ୍ୟବାଦ ଦେବାକୁ ଭୁଲିଛି ଶାନ୍ତନୁ,
ବନ୍ଧୁମାନେ ଇଙ୍ଗିତ ଆଖିରେ ହସିଛନ୍ତି ଗୋପନରେ ।
ଏଇତ ସେଦିନ ।

ଆଜି ଶାନ୍ତନୁ ବଡ଼ ମ୍ରିୟମାଣ
ଅନ୍ୟ ଏକ ମଳିନ ଶାନ୍ତନୁ—
କଲେଜ ଷ୍ଟ୍ରୀଟ୍‌ର ଫୁଟ୍-ପାଥ୍‌ରେ ପୁରୁଣା ମଲାଟଛିଡ଼ା ବହି,
ଯେତେ ବି ଓଲଟାଅ, ପୃଷ୍ଠାଗୁଡ଼ା ଧୂଳି,
ତା ତଳକୁ ରେକ୍‌ସିନ୍‌ର ସ୍ମୃତି, ଖାଲି ସ୍ମୃତି ।
ଗୋଲଦୀଘିରଜଳରେ ହୁଏତ ଯୌବନର କିଛି କିଛି ଛାୟା
ଏବେ ବି ମାଛ ପରି ଖେଳେ ।
ଏବେ ବି ଲଫ୍‌ଟ୍ ସାମ୍ନାରେ ହୁଏତ କଙ୍କଣ ବାଜେ
ଲାଇବ୍ରେରୀ ଦ୍ୱାରେ
ଭେନିଟି ବେଗ୍‌ର ଷ୍ଟ୍ରାପ୍‌ରେ ଆଙ୍ଗୁଳି ବୁଲାଏ କେହି—
ଅନ୍ୟ ହାତ,
କେଉଁ ରଚନାକୁ କେହି କହେ 'ଚମତ୍କାର'
ଅନ୍ୟ କେହି ।
ଶାନ୍ତନୁ ବେକାର ଏବେ,
ଜିଜ୍ଞାସୁ ଆଖିରେ ତା'ର ଗୋଟିଏ ଜିଜ୍ଞାସା :
"ଦୟାକରି ଦେଖିବେ କି ସାର୍, ଯେ କୌଣସି ବେତନରେ ଆପାତତଃ…"
ନିରୁତ୍ତର ଆପାତତଃ ; ପରିହାସ କରେ ସୁଇଂ ଡୋର୍,
ନିରୁତ୍ତର ନୋଟିସ, ଆଜି ନିରୁତ୍ତର ସାନ୍ତ୍ୱନା,
ସୌନ୍ଦର୍ଯ୍ୟ ତାତ୍ତ୍ୱିକ ଗ୍ରନ୍ଥ, ଯତ୍ନେ ସଂଗୃହିତ
ଦୁରୂହ-ସୁନ୍ଦର ବାଣୀ ଶାନ୍ତନୁ କି ଭୁଲିଯାଏ ?
ଶାନ୍ତନକୁ ଭୁଲିଛି ଶ୍ୟାମଳୀ ?
ପୁରୁଣା ବହିର ପୋକ—ଶାନ୍ତନୁ—ଦେଖିଛି ବୃଷ୍ଟି

ଗ୍ରନ୍ଥଗୁଚ୍ଛକ୍ ପୃଷ୍ଠାରେ ପୃଷ୍ଠାରେ
ନାୟକର କୀଟଦଷ୍ଟ ଛବି ଅଦ୍ଭୁତ ଲାଗୁଛି ଦେଖି
ଆଲ୍‌ପିନ୍‌ର କଣ୍ଟା ଯାଗା ମୁହେଁ ।
ଶାନ୍ତନୁ ମନସ୍କ ହେଇ ଦେଖେ,
ଦେଖେ ଏବଂ ଭାବେ ।
କପାଳେ ଜ୍ୱରର୍ ତାତ, ଫେରିବାକୁ ହେବ ଘରେ,
ସୁପାରିଶ ପତ୍ର ନେଇ ।
ଦେହସାରା ବ୍ୟଥା, ଦଂଶନେ ଦଂଶନେ ଜାଳୁଛନ୍ତି
କୀଟ-ଦଷ୍ଟ ।
ମନେ ପଡ଼େ କେବେ
କ୍ଲାସର ସଙ୍ଗିନୀମାନେ
ଗାଉଥିଲେ ତ୍ରିପଦୀ ଗୋଟିଏ—
“ଆହା ମରି ମରି
ଶାନ୍ତନୁ ପ୍ରତିଭାବାନ୍
ଶ୍ୟାମଳୀ ସୁନ୍ଦରୀ ”

## ଆର୍ସିକୁ ଛିନ୍ନ କର

ସ୍ମୃତିର କାନ୍ଥରେ ଝୁଲେଇ ରଖିଥିଲ ଅନେକ ଦିନୁ
ଏବେ ଆର୍ସି ଭିତରେ ମୋତେ ଗୁନ୍ଥି ଦେଇଛ ;
ଏଠି ମୁଁ ଅଦେଖା, ଅଯୋଗ୍ୟ, ଅସ୍ପୃଶ୍ୟ,
ତଥାପି ତୁମ ଗୁଣ, ଆଖିରେ ଆଖି ଯେପରି ନ ପଡ଼େ, ଲାଜ ଲାଗିବ ।

ତୁମର ହାତର କଙ୍କଣ ଯେବେ ଆଖିରେ ଝଲସିଉଠେ, ମୁଁ ଟେର ପାଏଁ
ସେତେବେଳେ ଭୟ ଲାଗେ,
ହୁଏତ ଆର୍ସିର ପରଦା ଟିକକ ଚୂରମାର କରି
ପୁଣି ମୋତେ ସ୍ମୃତିର ଉଠାଣିକୁ ନେଇଯିବ ।
ଆର୍ସିର ଜଗତକୁ ମଝିରେ ମଝିରେ ବିଶ୍ୱାସ ହୁଏନା,
ବିଶେଷତଃ ଯେତେବେଳେ ଓଠ କଣରେ ସଦ୍ୟ ଦଂଶନର ଜ୍ୱାଳା ଜଳିଉଠେ,
ଯେମିତି କାମ୍ନା ଏବଂ ସ୍ପୃହା ଅଭିନ୍ନ ଭେଦାଭେଦ ।

ଶାମୁକା କେବେ ମୁକ୍ତା ଦେବ, ଆକାଶ କେବେ ମଧୁମାସ ଆଣିବ,
କେହି ଜାଣେନା ।

ମୋ ଭିତରେ ତୁମର ବ୍ୟଥା କେବେ ଅନୁରୂପ ହେବ,
କେବେ ତୁମେ ମୋତେ ଏକାନ୍ତରେ ଗ୍ରହିଁବ, କେହୁ ଜାଣେନା ।
କେହୁ କହୁ ପାରେନା କେବେ ଆମେ ଶଙ୍ଖର, କେବେ ବା ଅଶଙ୍ଖର
କେବେ ଆମେ ସ୍ବୃହାନ୍ତ, କେବେ ବା ସ୍ବୃହାନ୍ତନ ।

ଏଇ ମୁହୂର୍ତ୍ତେ ହୁଏତ ମୋତେ ଛିନ୍ନ ଭିନ୍ନ କରିବ,
କିନ୍ତୁ ଜାଣେ ଠିକ ପରକ୍ଷଣେ
ପୁଣି ମୁଖେ ମୁଖେ ଶ୍ଳୋକ ପରେଶ୍ଳୋକ ରଚନା କରି
ମୋତେ—କୁକୁର ମୁଖର ମାଂସ ଖଣ୍ଡକୁ—ଗୃଟିବ
ଯେମିତି ତୁମର ଆକାଶଲମ୍ବୀ ସ୍ୱପ୍ନ ଛଡ଼ା ମୋର କୌଣସି ଅବୟବ ନାହିଁ,
ଯେମିତି ମୋର କଟିଦେଶରେ କେବେ କେଉଁ ଅଦମନୀୟ ଈପ୍ସା ନ ଥିଲା,
ଯେମିତି ଓଠର ଆଘାତରେ ମୋତେ କେବେ ଅବାଙ୍ମୁଖ କରିନ
ଯେମିତି ସେପ୍ଟେମ୍ବର-ଅକ୍ଟୋବରରେ କେହୁ ମୋର ଲକ୍ଷ୍ୟ
ଭେଦ କରିନ,
ମୋର ଅଷ୍ଟାଦଶର କୋକିଲ ଉଦ୍ଭିନ୍ନ ସ୍ତନ୍ୟ ମଧ୍ୟରେ
ଯେମିତି କେବେ ଗୀତ ଗାଇନ !
ମୋର ସ୍ୱରପାଖରେ ଅନେକ ଅଧର ତୃଷ୍ଣା
କାଳଚକ୍ର ବୃତ୍ତରେ ବୃତ୍ତରେ ମୋତେ କେବଳ ଆସିରୁ ଛିନ୍ନ କରି
ପୁଣି ଆସି ଭିତରକୁ ଠେଲିଦେଉଛୁ ।
ମୋତେ ନଗ୍ନ କରୁ କରୁ ଯେତେବେଳେ ଆଉ କୌଣସି ଆବରଣ ନାହିଁ
ଆଖି ଢାଙ୍କି ସେତେବେଳେ ଦୁଇହାତରେ ବାହୁଯୋଗ୍ୟ ଦେହକୁ
ଟାଣି ଛିନ୍ନ କରି

ପୁଣି "ନୁହଁ-ବଧୂ-ଉଙ୍କଣୀ" ଆସରେ ମୋତେ ନିକ୍ଷେପ କରୁଛ ।
ସ୍ମୃତିରୁ ଉପାଡ଼ି ନେଇ ରହସ୍ୟର ବୋରଖାରେ ବୁଡ଼ାଇଦେଉଛ।

ଏ ମୁହୂର୍ତ୍ତେ ମୁଁ କେବଳ ଇପ୍‌ସାର ସ୍ୱରଲିପି,
କିନ୍ତୁ ତା'ପରେ ପୁଣି ସ୍ମୃତିର ଦେଆଲ ଏବଂ ଅନେକ ଋତୁ ଏବଂ
ଶାମୁକା କେବେ ମୁକ୍ତା ଦେବ, ଆକାଶ କେବେ ମଧୁମାସ ଆଣିବ,
କେହି ଜାଣେନା ।

# ଦେବଦାରୁ ଓ କୃଷ୍ଣଚୂଡ଼ାର ଶୋକେ

କୁଠାରେ କୁଠାରେ ଛିନ୍ନ, ମୁଁ ଆଜି ଅଫିସ ଯିବିନି ;
ରକ୍ତାକ୍ତ ଏକ ଦାରୁର ଭଗ୍ନାଂଶ ମୁଁ ଆଜି,
ମୁଁ ଆଜି ଅସୁସ୍ଥ, ମୁଁ ଆଜି ଅଫିସ ଯିବିନି ।

ଡ୍ରୋଭର ଲେନ୍‌ର ସେଇ ପଡ଼ିଆଟା ପାରି ହେବାକୁ ଯାଇ
ମୁଁ ଆଜି ବାକ୍‌ଶୂନ୍ୟ, ପଙ୍ଗୁ ହୋଇଯାଇଛି ।
ଯେ ପ୍ରାନ୍ତରେ ଦେଖିଛି ମୁଁ ଅନେକ ସନ୍ଧ୍ୟାର ତାରା
ଏ ମୁହୂର୍ତ୍ତେ ସେ ପ୍ରାନ୍ତର ନିତାନ୍ତ ଅନାଥ—
ଇତସ୍ତତଃ ଛିନ୍ନଶାଖା ଛିନ୍ନକାଣ୍ଡ, ଶୁଶ୍ରୂଷାବଞ୍ଚିତ ।
ମୁଁ ବି ଅନାଥ,
ଛିନ୍ନ ଅଙ୍ଗ ପ୍ରତ୍ୟଙ୍ଗର ଆଦ୍ୟ ଅଂଶୀଦାର
ଦେବଦାରୁ କୃଷ୍ଣଚୂଡ଼ା ସ୍ତୂପୀକୃତ ଶବେ—
କି ଘେନି ମୁଁ ଯିବି ?

"ଯାଅ, ଫେରିଯାଅ, ପରଶୁରାମର ଦଳ, ତୁମେ ସବୁ ଫେରିଯାଅ"
ବୃଥା ଉକ୍ତି ମୋର ।
କେ ଶୁଣିଛି ? କେ ଫେରିଛି ?

ଦସ୍ୟୁସ୍ୱାନ ଆତତାୟୀ
ବିବେକର ଶେଷ ଦଂଷ୍ଟ୍ରା କାଟିଛୁ କରତେ ।

ମୃତ ଦେବଦାରୁଟିର ଅନ୍ତିମ ଯନ୍ତ୍ରଣା
ଶୋଇଛୁ ମୋ ଆତ୍ମାର ଅଙ୍ଗନେ
ଅଶରୀରୀ ଅବ୍ୟକ୍ତ ଅବୋଧ ;
ହୃତ୍‌ପିଣ୍ଡ-ମୂଳ ମୋ ଏଇ ବଧାସ୍ତ୍ରୀ ଫଳକେ ।

କୃଷ୍ଣଚୂଡ଼ା ଶବଟିକୁ ନେଇଗଲେ ବିଶାଳ ଲଗ୍ନରେ
ରକ୍ତର ଦର୍ପ ମଧ୍ୟରେ ଅନ୍ତିମ ଶାସ୍ତି ତ
ଆତ୍ମା ତାର ଏ ମୋର ଆତ୍ମାର ମଧ୍ୟେ,
ଶେଷ ଶୀର୍ଣ୍ଣ ମୁଖ ତା'ର ମୋ ମୁଖର ଜନ୍ମେ
ରହିଛୁ ମୁଦ୍ରିତ ।

ଦୁଃସ୍ଥ ମୁଁ, ଜଡ଼ାନ୍ତ ଅସୁଖୀ ମୁଁ,
ମୁଁ ଆଜି ଅଫିସ ଯିବାକ ।

●

# ପାର୍କଷ୍ଟ୍ରୀଟର ସ୍କେଚ୍

ପାର୍କଷ୍ଟ୍ରୀଟ୍‌ର ମୋଡ଼ରେ ଯେମିତି କିଏ ଡାକିଲା
ମୁଁ ସ୍ପଷ୍ଟ ଶୁଣି ପାରିଲି: "କୁଆଡ଼େ ?"
କିନ୍ତୁ କାହାକୁ ଦେଖିଲିନି ।

ଖୁବ୍ ଜୋରରେ ବ୍ରେକ୍ ଚାପିଲି
ଜୋତାଟା କ୍ଲଚ ଉପରେ ଟିକିଏ ଘଷିଲା—
ନା, କେହି କୁଆଡ଼େ ନାହାଁନ୍ତି ।
ଆର୍ସି ଭିତରେ ପଛରେ ସେକ୍‌ସପିଅର ସରଣୀ ପର୍ଯ୍ୟନ୍ତ
ପିଚ୍ ରେଖା ଛଡ଼ା କିଛି ନାହିଁ ।
କିନ୍ତୁ ସିଟ୍‌ରୁ ଉଠିଲିନି ।
ଧୀରେ ଧୀରେ ପୁଣି ଗିଅର୍ ଚାପିଲି ।
କାହାକୁ ଦେଖିଲିନି,
ଖାଲି ନିଜକୁ ପଚାରିଲି: "କୁଆଡ଼େ ସତେ ?"

ମ୍ୟୁଜିୟମ ସାମ୍ନାରେ କ'ଣ ଯେମିତି ଗୋଟାଏ ଅସାଡ଼ ହୋଇ ପଡ଼ି
ରାସ୍ତା ରୋଧ କରିଛି ।

ପୁଣି ଖୁବ୍ ଜୋରରେ ବ୍ରେକ୍ କଷିଲ, ପଛରେ—
ନା, ତା ନୁହେଁ, ଦେବଦାରୁର ଦୀର୍ଘ ଛାୟା ।
ପୁଣି ସେମିତ କିଏ ଡାକିଲ
ମୁଁ ସ୍ପଷ୍ଟ ଶୁଣିପାରିଲି : "କୁଆଡ଼େ ?"

ଏଥର ସ୍ପୀଡ୍ ବଢ଼େଇଲି
ଖୁ-ଉ-ବ୍
ଅପସୃୟମାଣ ମୋର ଦୁଇପାର୍ଶ୍ୱ ଝାପ୍‌ସା ହୋଇ ହୋଇ ଏକଦମ
ଅସ୍ପଷ୍ଟ ହେବା ଅବଧି ।
ତା'ପରେ, ସେଇ ଶବ୍ଦ ମୋତେ ଉଡ଼େଇ ନେଇ ଘୂରେଇଲା ବନସାକ
ପାର୍କଷ୍ଟ୍ରୀଟରୁ ଷ୍ଟ୍ରାଣ୍ଡ, ଷ୍ଟ୍ରାଣ୍ଡରୁ ବକ୍‌ବକ୍,
ପୁନଶ୍ଚ ଷ୍ଟ୍ରାଣ୍ଡ, ପୁନଶ୍ଚ ଏସପ୍ଲାନେଡ୍, ପୁନଶ୍ଚ ମ୍ୟୁଜିୟମ,
ଖୁବ୍ ଜୋରରେ ପୁଣି ବ୍ରେକ୍ କଷିଲି ।

କିଏ ସେମିତ ଡାକିଲ ।
"କିଏ ?" ମନେ ମନେ ଚିତ୍କାର କରି ଉଠିଲି ।
କେହି ନା ।
ଷ୍ଟାର୍ଟ ଦେବାକୁ ଯାଉଛି, ଦେଖିଲି—
ଏକ ବୃଦ୍ଧ । ଖାଲି ଗୋଡ଼, ହାତରେ ଗୋଟାଏ ଠେଙ୍ଗା,
ଠିକ୍ ପାର୍କଷ୍ଟ୍ରୀଟ ମୋଡ଼ରେ ଷ୍ଟେରୁ ପରି ଠିଆ ।

ତା'ପରେ ସମଗ୍ର ବଙ୍ଗ, ସମଗ୍ର ଭାରତବର୍ଷ,
ନୂଆଖାଲିରୁ ସାବରମତୀ,
ଗାଡ଼ିରେ, ଟ୍ରେନରେ, ଏରୋପ୍ଲେନରେ ଛୁଟି ଛୁଟି ଧରୁଛି,
ଆଉ ସେଇ ଷ୍ଟେଚୁ ପରି ଲୋକଟା ଖୁଣ୍ଟ ପରି ଠିଆ ହୋଇ
ମୋର ସ୍ପିଡୋମିଟରକୁ ଲକ୍ଷ୍ୟ ଦେଉଛି,
ଭଡ଼େଇ ନେଇ ଘୂରେଇଛି ଏ ପଥରୁ ସେ ପଥ
ପାର୍କଷ୍ଟ୍ରୀଟରୁ ବଜବଜ, କଲିକତାରୁ ଦିଲ୍ଲୀ,
କାମରେ ଅକାମରେ
ନ୍ୟାୟ-ଅନ୍ୟାୟ-ନିୟମ-ଅନିୟମର ଉଠୁପଡ଼ ପଥରେ
ଛୁଟି ଛୁଟି କେବଳ ଶୁଣିଛି—"କୁଆଡ଼େ ଯାଉଛ ?"
ଆଉ ଖାଲି ବ୍ରେକ୍ ଚିପିଛି ।

ସେଇ ବୁଢ଼ା, ଖାଲି ଗୋଡ଼, ହାତରେ ଗୋଟାଏ ଠେଙ୍ଗା,
ସବୁଠି ଷ୍ଟେଚୁ ହୋଇ ଠିଆ ।
ସତେ, କୁଆଡ଼େ ଯାଉଛି ମୁଁ ?

# ପରଦିନ

ମୋ ମୃତ୍ୟୁର ପରଦିନ
ଆକାଶଟା ବିଲକୁଲ ଅପରାଜିତା-ନୀଳ—
ଯେମିତି କେବେ ବି ଝଡ଼ ଉଠିନି, ଧୂଳି ଉଡ଼ିନି,
କ୍ଷେତଭରା ନାଲାବର୍ଣ୍ଣ ଆଉ ଗହମର ଢେଉ,
ତୋଟାଠେସା ଆମ୍ବ ଆଉ ସପୁରି
ଘନ ଗୋଛାକରେ ପୃଥିବୀଟା ଯେମିତି ଓଲଟିଯାଇଛି ;
ଗାଈର ଏତେ ଦୁଧ, ହ୍ରଦ ଜଳରେ ଏତେ ସ୍ୱାଦୁ,
ଘରରେ ଏତେ ଆଲୋକ, ରାସ୍ତାରେ ପୁଣି ଏତେ ସୁଖ !
ଏସବୁ ଯେମିତି ମୋତେ ଜବ୍ଦ କରିବା ପାଇଁ ।

ମୋ ମୃତ୍ୟୁର ପରଦିନ
ପୃଥିବୀ ଘନ ଗୋଛାକରେ ଓଲଟିଯାଇଛି ।
ଦେଢ଼ଟାର ଡାଉନ ଗାଡ଼ିଟା କେମିତି କେଜାଣି
ଆପେ ଆପେ ଷ୍ଟାର୍ଟ ହୋଇଛି ।
ନଈରେ ଏତେ ମାଛ, ଜନ୍ମରୁ ବି ଦେଖିନି ।
ବ୍ୟାଙ୍କ୍‌ରେ ଏତେ ଟଙ୍କା ! ଗଣି ଶେଷକରି ହେଉନା ବାବା !
ଏବଂ ଦୋକାନରେ, ସତେ ଆପଣ ବିଶ୍ୱାସ ମଣିବେ, କେତେ କ'ଣ
ଭିଡ଼ !

ମୋ ମୃତ୍ୟୁର ପରଦିନ
କବୁତର ଉଡ଼ିଯାଇଛି ଦିଗରୁ ଦିଗନ୍ତ, ସମୁଦ୍ର ସେପାରେ—
ପୂର୍ବେ, ପଶ୍ଚିମେ, ଉତ୍ତରେ, ଦକ୍ଷିଣେ, ରେଡ଼ିଓ ଓ୍ୱେଭ ପରି,
ଏ ଦେଶର ବାଇଶ ସେ ଦେଶର ଏକୋଇଶ ହାତେ ହୃଦୟ ଥାପି
ଏବଂ ଏସବୁ ଏସବୁ କିଛି ସ୍ଥଗିତ ଥିଲା ଯେ ଅବଧି ମୁଁ ଥିଲି ଜୀବିତ ।
ଯେମିତି କେହି ମହର-ମୁଦ୍ରାକର ନିମନ୍ତ୍ରଣ ପତ୍ର ପ୍ରେସରେ କମ୍ପୋଜ କରି
ପକେଇ ରଖିଥିଲା ମୋତେ ବାଦ୍ ଦେବ ବୋଲି,
ଏବଂ ମୋ ମୃତ୍ୟୁର ଠିକ ପରଦିନ ଜରୁର 'ପ୍ରିଣ୍ଟ-ଅର୍ଡ଼ର' ଦେଇ ଦେଇଛି ।

ଯେଉଁଦିନ ମୋର ମୃତ୍ୟୁ, ସେଦିନ
କ୍ଷଣିକରେ ବିସ୍ଫୋରଣ, ସୌରବତର ଶୂନ୍ୟରେ ଦିଗନ୍ତ ଓଲଟ ପାଲଟ,
ଟାଙ୍କିରେ ଟୋପାଟିଏ ବି ଜଳ ନାହିଁ । ମେନ କରେଣ୍ଟ ଅଫ୍ ।
ଟେଲିଫୋନ ଡେଡ଼, ପଙ୍ଖା ଅଚଳ,
ଯେମିତି ଗୋଟା ସଂସାରଟା ଯାକରେ ଲାଲବତି,
ହାର୍ମୋନିୟମର ରିଡ୍‌ଗୁଡ଼ାକ ଟଣା ହୋଇ ଉପୁଡ଼ିପଡ଼ିଛି ।
ବେହେଲାର ଲ-ଏ-ଡ଼ି-ଜ ଓଲଟପାଲଟ,
ଏବଂ ଜାମାର ବୋତାମସବୁ ଅଦୃଶ୍ୟ
ମନେ ହେଲା ବଞ୍ଚି ରହିବାଟା ନିରର୍ଥକ ।

କିନ୍ତୁ ଠିକ୍ ପରଦିନ
ପୃଥିବୀଟା ଏତେ ବଦଳିଯିବ ବୋଲି କିଏ ଜାଣିଥିଲା ?
ପରଦିନ ପୃଥିବୀକୁ ଜନ୍ମ କରିଛି ବୋଲି ଠିକ ଉଲ୍ଲସିତ ହେବାକୁ ଯାଉଛି

ହଠାତ୍ ପୋଖରୀରେ ଜାଲ୍ ପଡ଼ିବାର ଶବ୍ଦ,
ଡ୍ରଇଂ ରୁମରେ ମେଣ୍ଡୋଲିନ ବାଜୁଛି,
ଡାଲହାଉସି ପାହାଡ଼ର ସ୍କୁ-ଖଟିରେ ବନ୍ଧୁମାନେ ଜମାଟ ବାନ୍ଧୁଛନ୍ତି
ଏବଂ ଟେଲିଭିଜନ୍‌ରେ ପ୍ରାଇମା ବେଲେରିନାର ଢଲବାହାର ନାଚ !

ମୋର ମୃତ୍ୟୁର ଠିକ ପରେ
ପୃଥିବୀଟା ସତେ ଏମିତି ଓଲଟିଗଲା, ଆଶ୍ଚର୍ଯ୍ୟ !
ଏବେ ଏଠି ଆଲୁଅ ତ ସେଠି ଉତ୍ସବ,
ଇସ୍, ଖାଲି ଭଲ ଆଉ ଭଲ—ଭଲ ଆଉ ଭଲ—
ଭଲ, ଭଲ, ଭଲ···ଆହୁରି ଭଲ···
ଆକାଶର ମେଘଗୁଡ଼ା ଗଛ ମୂଳରେ ବିଗଳିତ
ସବୁଗୁଡ଼ା ଗଛ ଡାଳ ଝୁଙ୍କିଛନ୍ତି । ଏବଂ ଡାଳ ଭର୍ତ୍ତି ଫୁଲର ପସରା
ଗଛରେ ଗଛରେ ଫୁଲ, ପୁଣି ଫୁଲରେ ଫୁଲରେ ମହୁ ।
ଆଃ, ମରି ଯା, ଭୁଲ ମୁଁ କରିଛି ନା. କଣ କହିବ ?

ଭାବିଥିଲି, ମରି ବଞ୍ଚିବି ।
ପୃଥିବୀଟାର ମୁହଁରେ ଏତେ କଷ୍ଟର ଦାଗ ପିଠିରେ ତାର ଏତେ କଳାଚକ
ରାସ୍ତାରେ ଜମାଗଡ଼ କଣ୍ଟା ଏବଂ ଲକ୍ଷ୍ୟ ଦୁରନ୍ତ ;
ଘରଆଡ଼େ ନିଷେଧ ଓ କଣ୍ଟାତାର ; କ୍ଷୁଧାର୍ତ୍ତର ହାତରେ ଶୂନ୍ୟ ଥାଳ
ଏବଂ ଆଖିରେ ଦୁଃସ୍ୱପ୍ନର କଙ୍କାଳ-ନୃତ୍ୟ ।
ମୁଁ ଟିକିଏ ଶୋଇବାକୁ ଚାହିଁଥିଲି,
ବଉଳଗଛ ତଳେ ସାମାନ୍ୟ ଟିକିଏ ମାଟିର ଆଶ୍ରମ,
ଟିକିଏ ବଞ୍ଚିବି !

କିନ୍ତୁ ମୋ ମୃତ୍ୟୁର ପରଦିନ
ବିଶ୍ୱାସ ହୁଏନା ଯେ ପୃଥିବୀଟା ବିଲକୁଲ ଓଲଟିଯାଇଛି ।
ନିଜ ହାତରେ ତିଆରି ପାଚେରିଘେରା କୋଠାଟା ଯେମିତି ଅନ୍ୟ କାହାର
ମୁଁ ଥିଲି—ଯେମିତି କେହି ନୁହେଁ ।
ଏଇ ଯେ ଫୁଲଦାନୀରେ ରଙ୍ଗୀନ ସ୍ତବକ, ଫାଟକରେ ସ୍ୱାଗତମ-ଶାନାଇ
ସକାଳର ଟେବୁଲରେ ବଟର ସ୍ଲାଇସ ଲୋଫ ଏବଂ ଉଲକୋବି ଭଜା,
ଅତିଥିଙ୍କ ପାଇଁ ସରଭିଜା,
ବନ୍ଧୁଙ୍କ ପାଇଁ କ୍ରୀମ କଫି, ସ୍ପଞ୍ଜ ପୁଡ଼ିଂ ଓ ମଟରଛୁଇଁ ଖିଚୁଡ଼ି,
ମଧ୍ୟାହ୍ନରେ ମନମାଫିକ ବିରିଆନି ବା ବାଗଦା ଚିଙ୍ଗୁଡ଼ିର ପଲଉ
ଏବଂ ମୋଲ୍ଲାରଚକର ଦନ୍ଧ ।
ଏଇଟା ସ୍ୱପ୍ନ ନା ମାୟା ?

ମୋ ମୃତ୍ୟୁର ପରଦିନ
ପଡ଼ାର କୁତ୍ତାଟା ବି ସିଂହଦ୍ୱାରଡ଼ି ଶୁଉଛି ।
ଗାଡ଼ି ବାରଣ୍ଡାରେ ନହବତ,
ନୂତନ ଯୌବନର ଦୂତମାନଙ୍କର ଦଖଲ ସେଠି ।
ମାଧବୀ ଲତା ତଳେ—
ଏଇମାତ୍ର ଆସିଥିବା ଫାକ୍ଟରିପ୍ରସୂତ ବାଦାମୀ ରଙ୍ଗର ଫିଆଟ,
କଣ୍ଠରେ ତାର ନବଡ଼ା ଆହ୍ୱାନ,
ଏକ୍ସଏଲରେ ଦୂର ସୈକତର ସ୍ୱର,
ହେଡ଼ଲାଇଟରେ କୁହେଳି-ଭେଦୀ ଆକାଙ୍କ୍ଷା ।
ଏବେ ନାତିମାନଙ୍କର ସୁଦକ୍ଷ, ତନ୍ୱୀ ।   ବନ୍ଧୁହ ମାନଙ୍କର ଯୌବନ

ଫୁଲ-ଫୁଟିବାକୁ-ଝଲମ୍ବ ଏମିତି ବଗିଚା ଆଖିରେ ପଡ଼େନା, ଏବଂ
କାଲେଣ୍ଡାରରେ ସବୁ ତାରିଖ ଲାଲ ।

ମୋ ମୃତ୍ୟୁର ପରଦିନ
ପୃଥିବୀର ଏଇ ପରିବର୍ତ୍ତନଟା ଯେମିତି ମୋତେ ଜଡ଼ କରିବା ପାଇଁ ।
ମୋର ସେଇ ପୋଡ଼ା ଜୀବନଟା ପାଇଁ ଏବେ ବଡ଼ ମାୟା ହୁଏ ।
ସେଇ କଳାଚିତା ଦାଗ, ଗୋଡ଼ରେ ବେଡ଼ି ରାସ୍ତାରେ ଶବ୍ଦେ ଚୌରଙ୍ଗୀ,
ଫୁଟପାଥ୍‌ରେ କମ୍ବଳଘୋଡ଼ା ରାତି,
ଏବଂ ଫୋନ୍ ଖୋଜି ନ ପାଇବାର ଜ୍ୱାଳା,
ସେହି ଅସହ୍ୟ ପୃଥିବୀକୁ ଯେମିତି କେହି ରାତାରାତି ଗୁମ୍ କରିଛି
ମୋତେଇ ଜଡ଼ କରିବ ବୋଲି ।
ଏବେ ଈର୍ଷ୍ୟାର ସ୍ୱପ୍ନରେ ପୁଣି ଥରେ ମରେ, ଏଇତ ତାଙ୍କର କାମନା
ମରି ଭୁଲ କରିଛି, ଏବେ
ବଞ୍ଚି ଆଉ ଥରେ ଭୁଲ କରିବାକୁ ଚାହେଁ ।

## ଦ୍ୱିତୀୟ ଜନ୍ମ

ମୋ ପରି ଆଉ ଜଣେ ଏଇବାଟ ଦେଇ ଚାଲିଯିବ
ଠିକ୍ ମୋ'ରି ପରି, ହୁଏତ ସ୍ୱୟଂ ମୁଁ,
ମୋର ସ୍ୱପ୍ନଗୁଡ଼ିକୁ ମଟରଛୁଇଁ-ଜାଆଁରୁ ତୋଳିନେବ
ଏବଂ ବେଲଓଲି ବୋଗେନ୍‌ଭିଲିଆ ପତ୍ରରେ ସିନ୍ଦୂର ଛିଟା ଦେବ;
ମେଘସବୁକୁ ନଗାଡ଼ା ବନେଇବ ଏକ ଧାରା-ଶ୍ରାବଣ
ଯେମିତି ଏକ-ଉତୁରା ଦୁଧ, ଫେନିଳ ପିପାସାର ଉତ୍ତର ।

ମୋ ପରି ଆଉ ଜଣେ ଏଇବାଟ ଦେଇ ଚାଲିଯିବ,
ଠିକ୍ ମୋ'ରି ପରି, ହୁଏତ ସ୍ୱୟଂ ମୁଁ,
କେଉଁ ଏକ ସୁନ୍ଦର ସନ୍ଧ୍ୟାରେ ମୁଖ ତାର କୁହେଳି-ନିସ୍ତବ୍ଧ
ପକେଟରେ ଅଶୋକ ମଞ୍ଜରୀ ରଙ୍ଗୀନ୍ ଏକ କବରୀ ପରି,
ଲଇନୋରେ ଏଇମାତ୍ର ମୁଦ୍ରିତ ଟଙ୍କା ତେଇଶଟି ବର୍ଷ ଅବା ।
ନାସ୍ତିର କଣ୍ଠ କୁହରରେ ମନ୍ତ୍ରପରି ଉଚ୍ଚାରିତ ନାମ, କୁହୁକ—
ତା ସହିତ କେବେ ମୋର ସାକ୍ଷାତ ହେବନି ।
ସେ ଠିକ ମୋରି ପରି, ହୁଏତ ସ୍ୱୟଂ ମୁଁ,
ମୋତେ ଉପହାସ କରିବ, ମୋର ଦୁଆ ଦେବ, ଯା'ପାଖରେ ମୁଁ
ପରାଜିତ ହେବି ବୋଲି ଅନେକ କଷ୍ଟ କରିଛି
ଆଗେ ଜନ୍ମିଛି ।

ମୋ ପରି ଆଉ ଜଣେ ଏଇବାଟ ଦେଇ ଚାଲିଯିବ,
ଠିକ ମୋରି ପରି, ହୁଏତ ସ୍ୱୟଂ ମୁଁ,
ଯେବେ ମୁଁ ଈଶ୍ୱରଙ୍କ ପରି ଅନାମ, ନିରାକାର, ଅବାଙ୍‌ଗୋଚର ।
ତାଏଷ୍ଟରେ ବନ୍ଧୁ ବନ୍ଧୁ ଲୋକଙ୍କ, ରେଷ୍ଟୋଁ ଖୋଲି ଉଦାସୀନ ମୁଖ
ଝରଣା କଲମ, ବମୁଣ୍ଡିଶିଳ୍ପ, ବେହେଲା,
ସ୍କାଇସ୍କ୍ରେପର, ଶଙ୍ଖଚିଲ, କବୋଷ୍ଣ ନଦୀ,
ଗ୍ରୀଷ୍ମକାଳୀନ ଗୁଲମୋର ଏବଂ ପ୍ରସ୍ଫୁଟିତା ନାରୀ,
ଏବଂ ସେଇ ଅନ୍ୟ ଜଣକ, ଯାହା ସହିତ କେବେ ମୋର ସାକ୍ଷାତ
ହେବନି ।

ମୋ ପରି ଆଉଜଣେ ଏଇବାଟ ଦେଇ ଚାଲିଯିବ,
ଠିକ ମୋରି ପରି, ହୁଏତ ସ୍ୱୟଂ ମୁଁ,
ତାର ଜୋତାରେ ଫିତା ନାହିଁ ଯେ ମୁଁ ଖୋଲିବି,
କପାଳରେ ଚାପ ନାହିଁ ଯେ ମୁଁ ପୋଛିବି ;
ତା'ର କଣ୍ଠସ୍ୱର ମୋର ଶୁଶ୍ରୂଷା, କିନ୍ତୁ ମୁଁ ଶୁଣି ପାରିବିନି ;
ଆକାଶର ଅବାକ ତା'ର ଆଖିରେ, ମୋରି ପରି ;
ବର୍ଷାର ଅଜସ୍ର ଜଳ, ଶରତର ଧଳା-ଟିପିଟିପି-ନୀଳ,
ଆଉ ମାଟିର ଅଗାଧ ଶାନ୍ତି ସେ ବି ପାଇବ ;
ତଥାପି ମୋର ଓ ତାର କଣ୍ଠ ମଧ୍ୟରେ ଏକ ବିରାଟ ଜଳ ପ୍ରପାତ
ଯାହା ଶବ୍ଦକୁ ଅନ୍ଧ କରେ ।

ମୋ ପରି ଆଉ ଜଣେ ଏଇ ପଥ ଦେଇ ଚାଲିଯିବ ।
ଠିକ ମୋରି ପରି, ହୁଏତ ସ୍ୱୟଂ ମୁଁ,

ମୋ ଭିତରେ ସ୍ପର୍ଶକାତର ମୋର ଆନନ୍ଦ ଗୁଡ଼ିକ
ଝରକା ଦେଇ ଛୁଟିଦେବ, ବାଟକୁ ହେସ୍ତ କର,
ମୋର ମଧ୍ୟରାତ୍ରିର କଫିପିଆଲା
ଖସୁରଲ ପର, ଘଣ୍ଟି ଟିକ ଟିକ କରବ,
ସେଇ ଉଦ୍ଧତ ମଣିଷଟିକୁ ମୁଁ ଭଲପାଏଁ,
କିନ୍ତୁ କେବେ ତାର ସାକ୍ଷାତ ମୁଁ ପାଇବନି ।
ତା ଠାରେ ପରାଜିତ ହେବାର ସାକ୍ଷାତ ସୁଯୋଗ ମୁଁ ପାଇବନି ।

ମୋ ପର ଆଉ ଜଣେ ଏଇ ବାଟ ଦେଇ ଚାଲିଯିବ,
ଠିକ ମୋର ପର, ହୁଏତ ସ୍ୱୟଂ ମୁଁ ।
କଟଲେଟ ଥଣ୍ଡା ହେବ, ଲହୁଣୀତକ ତରଳିବ,
ଏବଂ ମୋର ଉଠିବାର ସମୟ ହେବ,
କିନ୍ତୁ ସେଇ ଅନ୍ୟ ଜଣକ ଆହୁରି ଅନେକ ପରେ ଆସିବ ।
ସେତେବେଳେ ଭରିଉଠିବ ପିଆଲା,
ଭିଡ଼ କରିବେ ଫଗୁଣର ପକ୍ଷୀଗଣ, ଖଇ ଫୁଟିବ ଓଠରେ ।
ମୁଁ ସେତେବେଳେ ସମାଲୋଚନାର ଶରବ୍ୟ, ଅଲକ୍ଷ୍ୟ,
ଦେଖିବନି, ଜାଣିବନି, ଶୁଣିବନି ।

ମୋ ପର ଆଉଜଣେ ଏଇବାଟ ଦେଇ ଚାଲିଯିବ,
ଠିକ ମୋର ପର, ହୁଏତ ସ୍ୱୟଂ ମୁଁ,
ମୋର ଏଇ ବୋଗେନଭିଲିଆ, ଶ୍ରାବଣ ଏବଂ କାଜୁବାଦାମ
ତାକୁ ସୁଖ ଦେବେ, ସ୍ୱାଦୁ ଦେବେ,

ଆକାଙ୍କ୍ଷାରୁ ଆକାଙ୍କ୍ଷାକୁ ଟାଣିନେଇ
ଢଣହଗ୍ର କରଡୋଲବେ, ମୋର ପର ।
ତାର ଅନାଗତ ସ୍ୱେଦ ମୋ, ମୁହଁରେ
ତା ଦୁଃଖରେ ମୁଁ ଦୁଃଖୀ,
କାରଣ ସେ ମୋ, ପର ଆଉ ଜଣେ,
ହୁଏତ ସ୍ୱୟଂ ମୁଁ ।

# ମୋତେ ଅନୁବାଦ କର

ମୋତେ ଅନୁବାଦ କର—କେହି, ଯେ କେହି ;
ମୋତେ ପୋଷ ମନାଅ—କେହି, ଯେ କେହି ;
ମୋତେ ଅପମାନ କର ।
ମୋ ଭିତରେ ଗଜେଇଥିବା ଶିଙ୍ଗକୁ କେହି ମୋଡ଼ି ବଙ୍କା କର,
ଆଉ କବାଟର ବେକରେ ଫାଶୀ ଦିଅ ।

ମୋତେ କେହି ନିଲାମରେ କିଣି ନେଇ ପାଣି ଦାମରେ ବିକି ଦିଅ,
ପ୍ରତିପନ୍ନ କର—ମୁଁ କିଛି ନୁହେଁ ;
ଦୁଇ-ପ୍ରହର-ଉଇ ସୂର୍ଯ୍ୟଙ୍କୁ ସାକ୍ଷୀ ରଖି
ଦ୍ରୁତ-ନଦୀର ମଝି ବ୍ରିଜରୁ
କେହି, ଯେ-କେହି ମୋତେ ଛୁଡ଼ିଦିଅ ।

ମୋତେ ଅନୁବାଦ କର—କେହି, ଯେକେହି ;
ମୋ ଭିତରର କଠିନ ଅବାଧ୍ୟ ଶବ୍ଦଗୁଡ଼ିକୁ
ଚିମୁଟା ଦେଇ ଟାଣି ବାହାର କର,
ଦରଜାର ଲିଣ୍ଟେଲ୍‌ସରେ ସତ୍‌ସତିଆ ପରି
ଯେ କଥାଗୁଡ଼ାକୁ ସତ୍ ସତ୍ କରେ
ସେଗୁଡ଼ାକ ଉପରେ ଲୁଣ ଛୁଡ଼ିଦିଅ,
ମାରିଦିଅ ।

ରବରରେ ଘଷି ମୋ ଦେହର ଚମଡ଼ାରୁ
ପାରତ ମୋର ନାଁ।ଟା ପୋଛି ଦିଅ,
ମୋତେ ଏମିତି ଅନୁବାଦ କର
ଯେମିତି ମୁଁ ସମୁଦ୍ର ନୁହେଁ, କ ପାହାଡ଼ ନୁହେଁ,
ଗ୍ରୀଷ୍ମ ନୁହେଁ, କ ଶୀତ ବ ନୁହେଁ,
ଯେମିତି ମୁଁ ଆଉ କିଛି, ଆଉ କେହି,

ମୋତେ ଲୁପ୍ କରିଅ—କେହି, ଯେକେହି ;
ମୋତେ ଅନୁବାଦ କର ।

# "ମଇନା ପଢ଼"—ପିସିମା

"ମଇନା, ପଢ଼"—ପିସିମା, ତୁ ଏବେ କେଉଁଠି ?
କେଉଁଠି ତୋର ସେଇ ନମ୍ରଛବି-ମୁଖ, ଶୀତଳପାଟି-ସ୍ନିଗ୍ଧ ଶରୀର
ତୋର କବୁତର-ଚକ୍ଷୁରେ ଶାସ୍ତିତ—ମୋର ପ୍ରଥମ ଉପନ୍ୟାସର ପାଣ୍ଡୁଲିପି !
ବିଶେଷତଃ ଖୋକା ମୋର ପ୍ରଥମ ଫାଉଣ୍ଟେନ ପେନ୍ ତୋର ଦିଆ,
ଏବଂ ଫେନଲୋଚ୍ଛଳ ସମୁଦ୍ରତୀରରୁ ସାଉଁଟା ମୋର ଏଇ ମରହଟିଆ
ତୋର ଦୁଧ-ଅଲତା ପଦତଳେ
ଶମହିମ ଉଦ୍ରବରେ ଛଳ-ଛଳ-ନୟନ ମୁଁ
ଏବେ ବି ଶିଶୁ—ବସିଅଛୁ ।

"ମଇନା, ପଢ଼"—ପିସିମା, ତୁ ଏବେ କେଉଁଠି ?
କେତେବେଳ ଯାଏ ପିଣ୍ଡାରେ ବସି
ହରିବୋଲ-ବଇଷ୍ଣମଠୁଁ  ସତେ ତୁ କେତେ ଗୀତ ନ ଶୁଣିଛୁ !
ନବଗଙ୍ଗା ନଈରେ କେତେ ମାଛ, କେତେ ସ୍ନେହ
ଅନେକ ଦିନୁ ମୁଁ ସେଠି ଗାଧୋଇନି, ପହଁରିନି,
ହାଜାରପୁର ମାଲ କୁଠରେ
ଲଟୁ କୋଳର ଲାଲ ଟକ୍ ଟକ୍ ଗ୍ରେପା ଛଡ଼େଇନି,
କେଉଁଦିନୁ ସତେ ସାଇକେଲ ଚଢ଼ି ମଶାଣି ବାଟେ ଯାଇନି,
ସିଦ୍ଧେଶ୍ୱରୀ ମଠରେ କୃଷ୍ଣା ଚତୁର୍ଦ୍ଦଶୀର ଘଣ୍ଟା ଶୁଣିନି !

ତୋର ଅନ୍ନଦାମଙ୍ଗଲ-ପଦାବଳୀ, କାଳିଦାସ ଗ୍ରନ୍ଥାବଳୀ ଭିତରେ
ପୋକ ପରି ବସେ ତୁ ମୋତେ ପଢ଼ିବାକୁ ଦେଇଥିଲୁ,
ତୋ "ଗୀତଗୋବିନ୍ଦ"କୁ କପି କରୁ କରୁ ବେଳ ଗଡ଼େ, ତୁ ଆବୃତ୍ତି କରୁ,
ତୋ କଣ୍ଠର ଆଶ୍ଚର୍ଯ୍ୟ ସବୁ ଲାଇନଗୁଡ଼ିକ ଏବେ ବି ମୋର କଣ୍ଠେ
ବାଇଚଢ଼େଇ ବସା ପରି ତୋର ସେଇ କୁଲୁଙ୍ଗୀରେ
କେତେ ଯେ ଏଣୁତେଣୁ ପୋଥିର ଛିନ୍ନାଂଶ
ପ୍ରାଚୀନ ଅଯୋଧ୍ୟା, ଦ୍ୱାରକାର ଗନ୍ଧେ ଭରପୁର :
ପ୍ରକାଣ୍ଡ ସଂସ୍କୃତ ମହାଭାରତଟା କୋଠରୀ ଭିତରେ
ସତେ ଯେମିତି ଗୋଟାଏ ମହୀରୁହ ।
ଏବଂ ତା ପାଖକୁ ସୁନେଲି ଅକ୍ଷର ଲେଖା—
ଦୁର୍ଗେଶ ନନ୍ଦିନୀ, କପାଳକୁଣ୍ଡଳୀ କୃଷ୍ଣକାନ୍ତର ଉଇଲ ।
ଇହକାଳ ଓ ପରକାଳ !

"ମଇନା, ପଢ଼" ପିଇମା ତୁ ଏବେ କେଉଁଠି ?
ମୋର ଏଇ ବଡ଼ ବୟସରେ ଖୁବ ଇଚ୍ଛା ହୁଏ—
ଜାଣନ୍ତି ତୋର ରକ୍ତରେ କେଉଁ ଯୁଗର ସଂଗ୍ରାମ,
ଚକ୍ଷୁ ପଲ୍ଲବ ତଳେ କେବେ କେଉଁଠି ଅଗ୍ନି ଉତ୍ପାତ ହେଉଥିଲା କି ନା,
ତୋର ଈଶ୍ୱରୀ ପରି ଆର୍ଦ୍ର ମୁଖ, ଶେଫାଳୀ ଗନ୍ଧା ନଟୋଳ ହସ
ତୋର ଦୁର୍ଭେଦ୍ୟ ସୌନ୍ଦର୍ଯ୍ୟ—କି ଜନ୍ମଗତ ?
ନା ତୋର ଅବରୁଦ୍ଧ କ୍ରନ୍ଦନର ଜନ୍ମାନ୍ତର ?
ପଶ୍ଚିମ ପାଖର ସେଇ ମେଲାରେ ଶୋଇ
ତୁ ମୋର ଉପନ୍ୟାସର ପାଣ୍ଡୁଲିପି ଦେଖିଛୁ—

ପୃଷ୍ଠା ପରେ ପୃଷ୍ଠା, ପୃଷ୍ଠା ପରେ ପୃଷ୍ଠା—
ସଦ୍ୟ-ଉଦ୍‌ଗତ କଥାଗୁଡ଼ିକୁ ଓଜନ କରି କରି ପଢ଼ିଛି,
ଅବିଶ୍ୱାସ୍ୟ ଆକାଶରେ କେତେ ଗୁଡ଼ି ମୁଁ ଉଡ଼େଇଛି—
ତୁ ବନ୍ଧୁ ପରି ସାହସ ଦେଇଛୁ, ସୂତା ଗୁଡ଼ିଛୁ, ପ୍ରଶ୍ରୟ ଦେଇଛୁ,
ମୋର ସ୍ୱପ୍ନସମ୍ଭବ ଚନ୍ଦାଲ ଗୁଡ଼ିଟା ବି ଯେମିତି ତୋ'ରି ।
ତୋ ଦିଆ ଫାଉଣ୍ଟେନ ପେନ ମସୃଣ ଖାତା, ଏବଂ
ଅସଂଖ୍ୟ ଝିଙ୍କାଷିର ସ୍ୱର ରକ୍ତର ସ୍ରୋତଲିପି—
ସୃଷ୍ଟି ଭିତରେ ।

"ମଇନା, ପଢ଼" ପିସିମା, ତୋର ଦିନାନ୍ତଶ୍ରୀ-ମୁଖ ମୁଁ ଏବେ ବି ଦେଖେଁ ।
ମୋ ସ୍ୱପ୍ନ ଭିତରେ ତୋର ଅସଂରନ୍ତ ଶରତ, ଅଗଣିତ ସ୍ଥଳପଦ୍ମର ପାଖୁଡ଼ା,
ତୋ ଆଖିର ପାଣିଛପା ଏବେ ବି ମୋ ଆଖିରେ ।

ତୋର ଖଇ-ଧଳା ଶାଢ଼ୀରେ
ଦିନେ ମୋର ଶୈଶବର ପଣିକିଆ ବାନ୍ଧି ରଖିଥିଲୁ
କିନ୍ତୁ ତୁ ଜାଣିଥିଲୁ—ସମସ୍ତ ଦିନେ ମୋର ଦେହ ମନକୁ ଅଧିଗ୍ରସ୍ତ କରିବ
ଟେକାଟିଏ ପରି ଦୂରକୁ ଫିଙ୍ଗିଦେବ ମୋର ମାଛରଙ୍କା ଶୈଶବ,
ଆଣିବ କୋକିଳର ଋତୁ,
କବିତା ଭିତରେ ଯେବେ ମୁଁ ନିଆକରି ଅଙ୍କୁରିତ ହେବି
ସ୍ୱପ୍ନ ଦେଖିବି, ଏବଂ ମୋର ସ୍ୱପ୍ନସବୁ ଗ୍ରନ୍ଥ ଭିତରେ ଅପରାଜିତା ପରି ଫୁଟିବେ
ତୁ ଜାଣିଥିଲୁ—କଳ୍ପନାର ଜଳାକ୍ତ-ପ୍ରାନ୍ତରର ଖରା ପୁହିଁବାର ଏବଂ ଚନ୍ଦ୍ରାମୁହଁ
ପ୍ରତିମାର କଳକାରେ ସଜ ହେବାର ସେଇ ଋତୁ
ମୋର ଗ୍ରନ୍ଥରୁ ଗ୍ରନ୍ଥକୁ ପିଟିହେବ ।

“ମଇନା, ପଢ଼” ପିସିମା,—ତୋ ପାଇଁ ଶୋକ ସାନ୍ତ୍ୱନା କଛୁ ମୁଁ ଖୋଜନ୍ନ ।
କଏ କ'ଣ ହଜେଇଛୁ ?   କହ—କଣ ବା କଏ ହରାଏ ?
ସ୍ମା ଭିତରେ ଯା କଛୁ ଯାଇଛୁ ତା ଖାଲି ଗୁଡ଼ିଏ ଉତ୍ତର ଓ ଦକ୍ଷିଣାୟନ,
କଛୁ ଗାଢ ପୁହାଇବାର ରଶ୍ମି, କଛୁ କଛୁ ଅପରାହ୍ଣିକ ଅବସାଦ
ଦଳେ ଦଳେ ବନହଂସୀ,
ଅପୁଷ୍ଟଜନଭ ଦିଗନ୍ତରେ ସୂର୍ଯ୍ୟ ବୁଡ଼ିବାର ଆରକ୍ତ କଳରବ—
ଶବ୍ଦ ନିଃଶବ୍ଦ, ଶବ୍ଦ ନିଃଶବ୍ଦ, ଶବ୍ଦ,
ଏବଂ ତୋର “ପ୍ରୀୟନ୍ତେ-ସର୍ବଦେବତାଃ···”କଣ୍ଠସ୍ୱର ।

“ମଇନା,ପଢ଼”-ପିସିମା ତୁ ଏବେ କେଉଁଠି ?
ତୁ ଜାଣୁ ? ତୋର ଅନାବଶ୍ୟକ ମଇନାଟିକୁ ମୁଁ ମାରଦେଇଛୁ ?
ଅବଶ୍ୟ କେହୁ ଚହ୍ଲଟ କର ପାରନ ଏବଂ ଆକାଶର ରକ୍ତାକ୍ତ ରୌଦ୍ର
ସେଥିରେ ଢଳେ ବ ନଷ୍ଟ୍ରଭ ହେଇନ ।
କ'ଣ କଏ ହଜେଇଛୁ ? କହୁ—କ'ଣ ବା କଏ ହଜାଏ ?
ଖାଲି କେତୋଟି ଗାଢ ପାହାନ୍ତ ପହର
ଆଉ ସୂର୍ଯ୍ୟ ବୁଡିବାର ‘ଓରେ ବିହଙ୍ଗ’ ସନ୍ଧ୍ୟା,
ଏବଂ ମୋର ଗୁଡଫଟା ଡାକ—
ପିସିମା, ପିସିମା, ପିସିମା ।

# ଯେମିତି ଆଉ କେହି

ଯେମିତି ଆଉ କେହି, କେମିତି କେଜାଣି,
ଆମ ଆଗରୁ ଏଇ ଉପତ୍ୟକାକୁ ଆସିଛି ।
ଆଉ ପ୍ରତ୍ୟେକର ନାମ ଧରି ଡାକିଛି,
ଏ ଜଳକୁ କହିଛି ନଦୀ, ସେ ଜଳକୁ କହିଛି ହ୍ରଦ, ଏବଂ
ଝେ ଟୁପୁରୁ ଟୁପୁରୁ ଆକାଶ-ଝାଞ୍ଜିର ଜଳକୁ କହିଛି ବୃଷ୍ଟି ;
ନିଆଁ ରଡ଼ ପରି ତତଲ ଯେଉଁ ଲାଲଫୁଲକୁ କହିଛି କୃଷ୍ଣଚୂଡ଼ା,
ମୟୂରପଙ୍ଖୀ ଆକାଶକୁ ନୂଆ ବିଶେଷଣ ଦେଇ ମୁଁ ଯେ ନୀଳେଇବି,
ସେ ବାଟ ଆଉ ରଖିନି,
ଇନ୍ଦ୍ରଧନୁର ସାତୋଟି ଯାକ ରଙ୍ଗ ଉପରେ
ସାତଟି ନାଁର ଏକଦମ ବାର୍ଣ୍ଣିସ ପେଣ୍ଟ ଯେମିତି ମାଖି ଦେଇ ଯାଇଛି ।
ଆମର ଏଇ ଫଯ ରଟା ଡେମ୍ବୁ ଖାଲି ନାଁରେ ନାଁରେ ରୂପବାନ୍,
ରୂପସୀ ଆମର ଏଇ ପୁଷ୍କରଣୀ, ଏଇ ପୂର୍ଣ୍ଣିମା ଆଉ ସର୍ପଗନ୍ଧା ରାତି ।

କିଏ ଯେମିତି ଅନେକ ଦିନରୁ ଆସି ଏଠି ଗ୍ରୀଷ୍ମ ଛୁଟି କଟେଇଛି ;
ଦେଇ—ତାଙ୍କ ବଣଭୋଜିର ଚୂଲିଟା ପଡ଼ିଛି ସେ ଗଛ ଗୁଡ଼ିଇରେ ।
ଆଉ ଦେବଦାରୁର ବକଳରେ ତାଙ୍କ ତରକାରି ବଘାରର ପୁରୁଣା ବାସ୍ନା ।
ଶୁଖିଲା ପତ୍ରଗୁଡ଼ାକ ବତାସରେ ଆଲୁରୁ ମାଲୁରୁ !
ଯେମିତି କେଉଁ ଏକ ଡାଏରୀର ଛିଡ଼ା ମିଡ଼ା ପୃଷ୍ଠା ।

ହୁଙ୍କା ଉପରେ ପଡ଼ିଛି ଦିଗନ୍ତ-ସାକ୍ଷୀ ପ୍ରତିଶ୍ରୁତି
ପାଣି, ପବନ କି ବିଜୁଳିରେ ଯା'ର ପ୍ରତିଶବ୍ଦ ନାହିଁ ।
ଅନେକ ଅଜଣା ଅଶୁଣା ଶତାବ୍ଦୀ ହଜିଯାଇଛି
ଅଦିଆ-ଅନିଆ ହୃଦୟକୁ ଅତିକ୍ରମ କରି ।
ତା'ପରେ ଆମେ ଆସିଛୁ ଏଇ ଛତୁଛୁଆ ବର-ଓସ୍ତ ପଡ଼ିଆକୁ
ଟିଫିନ କେରିଅରରେ ଆମେ ଆଣିଛୁ ସନ୍ତୁଳା ମାଉଁସ,
ଗରମ ମସଲା ପାଇଁ ଡାଲଚିନି, ଲବଙ୍ଗ, ସାଙ୍ଗରେ ସଜନାଛୁଇଁର ଆଚାର;
ଆଉ ରସୁଆ ରସୁଆ କାଗିଜି !
ଡବା ଭିତରେ ଚମତ୍କାର ଅଳେଇଚଦିଆ ମିଠା ପାନ
ଆଉ ଆମ ସଙ୍ଗରେ ଅଛନ୍ତି କେଇ ଯୋଡ଼ା ଅଭିନ୍ନ ହୃଦୟ
ଯେଉଁମାନେ ପ୍ରତିଶ୍ରୁତି ଆଡ଼କୁ ଧପାଲି ହୁଙ୍କା ଉପରକୁ ଉଠିବାକୁ ଉନ୍ମୁଖ ।

ଯେମିତି ଆଉ କେହି ଏଠିକି ଆଗରୁ ଆସି
ଦି ହାତରେ ନା ସବୁ ବୁଣିଦେଇଯାଇଛି ।
ଯେତେ ଖୁସି ତେତେ, ଯେତେ ଦୂର ତେତେ
ନାଁରେ ନାଁରେ ଖାଲି ଟଙ୍କା ଏଇ ଦିନ ସବୁ, ଏଇ ରାତି ସବୁ ।
ଗୋଟାଏ ପ୍ରକାଣ୍ଡ ଶବ୍ଦକୋଷ ଭିତରେ—
ଶବ୍ଦ, ପ୍ରତିଶବ୍ଦ, ପ୍ରତିଶବ୍ଦର ପ୍ରତିଶବ୍ଦ
ଆମେ ତା ଭିତରେ ବସିଛୁ , ଏବଂ
ଆଉ କାର, ଆଉ କେଉଁ ଦିନର ମୁଖସ୍ଥ ପ୍ରତିଲିପି ମୁଖସ୍ଥ କରି ଚାଲିଛୁ ।
ସେମାନେ କେହି ନିଜ ନାଁ କହି ନାହାନ୍ତି,
କିନ୍ତୁ ଆଉ ସମସ୍ତଙ୍କର ସବୁକିଛିର ନାଁ ଦେଇ ଯାଇଛନ୍ତି ।

ମୋ ନାଁ ଦେଇଥିଲା ପିସିମା, ଏବଂ ପିସିମାର ନାଁ ଦେଇଥିଲା ତାର ମାଆ ;
କିନ୍ତୁ ଆମର ଏଇ ବଣଭୋଜିର ପୃଥିବୀରେ ପ୍ରତ୍ୟେକ ଗଛର,
ଏମିତିକି ଚଢ଼େଇମାନଙ୍କର ଶବ୍ଦର ବି ରହିଛି
କେହି-ଜାଣେନା-କିଏ ଦେଇଥିଲା— କାହିଁକି
ଏଇସବୁ ଅଭିଧାନ ବଳେଇ ପଡ଼ିବା ଅନର୍ଗଳ ନାଁ
ଏଇ "ନାମୈବ କେବଲଂ" ଯେମିତି ଆମର ନିୟତି ।

ଏଇ ମାନ୍ଧାତା ଅମଳର ପୃଥିବୀ ଦେହରେ ଅନେକ ରଙ୍ଗର ଛିଟା,
ତଥାପି ଏଠି ରହିଛି ସାପଖେଳା, ମନ-ଓଃଟର ଗପ୍ପ—
କାକଦ୍ୱୀପରୁ ସମୁଦ୍ର, ଫ୍ରେଜାରଗଞ୍ଜ,
ଦି'ପାଖରେ ଉଦ୍ୱାସ୍ତୁ କାକଳି, ମାଛରଙ୍କାର ଡେଣା
କଷି ଆମ୍ବର ସବୁଜିତ ତୋଟା ଏବଂ
ବି.ଡି.ଓ. ଜୀପ୍‌ରେ ଗୀତ-କବିତା ପରି ନହନହକା-ଟୋକୀ
ଏମାନେ ଶବ୍ଦରେ ଅଙ୍କା ଛବି ଦୃଷ୍ଟାନ୍ତ, ସ୍ତବ ଦୃଷ୍ଟାନ୍ତ,
ନୂତନ, ଅଲିଖିତ-ପୂର୍ବ କବିତା ଦୃଷ୍ଟାନ୍ତ
ଦୃଷ୍ଟାନ୍ତ ଗୀତ—ଯା'ର ସ୍ୱରଲିପି ପାଇଁ କେହି କେବେ ସାହସ କରନି,
ଏବଂ କ୍ରମାଗତ ପୁରୁଣା
କଥାର ସିନ୍ଦୁକରୁ ମୋତେ ବାହାର ଆସିବାକୁ କହନ୍ତି ।
ମୁଁ ଯେତେବାର ଅବାକ କରିଦେବି ଭାବେଁ,
ରକ୍ତିମ ସ୍ପନ୍ଦନକୁ ଅଦ୍ୱିତୀୟ ଶବ୍ଦରେ ଅନୁବାଦ କରିବାକୁ ଯାଏଁ,
ପାରେନା, ପୁରୁଣା ମାନ୍ଧାତା ଅମଳର ନାଁଗୁଡ଼ାକ ବାଟ ଓଗାଳି ବସନ୍ତି
ଯେମିତି କୌଣସି ଆବେଗ ଆଉ ଟଟକା ନୁହେଁ, କୌଣସି ଶବ୍ଦ ଅଶ୍ରୁତ ନୁହେଁ
ଯେମିତି କୁସୁମ ମାନେଇ ଆଘ୍ରାତ, ସଂସାରଟା ଯେମିତି ଦ୍ୱିତୀୟ ମୁଦ୍ରଣରୁ ସୁରୁ

ଅତଏବ ବ୍ୟବହୃତ ଚୂଲ୍ଲରେ, ବ୍ୟବହୃତ ଜଳ-ଆକାଶ
ମାଟି ଭିତରେ ଆମର ଏଇ ବଣଭୋଜ ।

ସେମାନେ ଆମକୁ ବାଧ୍ୟ କରିଛନ୍ତି ।
ଏଇ ମଧୁମାସରେ ତୁମେ ଯୁଆଡ଼େ ଦେଖ ଅନାମ ଗଛ ନାହିଁ, ଅନାମ ଫୁଲ ନାହିଁ,
ମାଲ, କଡ଼ କେହି ଅନାମ ନୁହନ୍ତି
ଏଇ ଋତୁ ପର୍ଣ୍ଣ ଅରଣ୍ୟରେ ଯାହା କିଛି ସବୁ ଅନ୍ୟ କଥାର କଲମ ;
ଅନ୍ୟ କେଉଁ କୋକିଳର ପ୍ରତିଧ୍ୱନିର ପ୍ରତିଧ୍ୱନିର ପ୍ରତିଧ୍ୱନି ଆମର ପଞ୍ଚମସ୍ୱର
ଅନ୍ୟ କେଉଁ ପ୍ରେମିକାର ପ୍ରତିଲିପିର ପ୍ରତିଲିପି ଆମର ପ୍ରୀତି ମନ୍ତ୍ର ।
ଆମେ ଯେତେବେଳେ ଅନନ୍ୟ ସେତେବେଳେ ଆଉ କେହି !

କେହି ଯେମିତି ଆମକୁ ବାଧ୍ୟ କରିଛି ।
ଆମ ପୋଖରୀରେ ଏତେ ନୂଆ ମାଛର ପହଁରା,
ଗଛରେ ଏତେ ନୂଆ ହୋଇ ଫଳିଥିବା ଜାମରୋଳ
କିନ୍ତୁ ସେମାନଙ୍କର ଛତୁ ପରି ଗଜେଇଥିବା ନାଁ ଗୁଡ଼ାକ ଲାଗିଛି କାଠ
ହୋଇ ମାଛ ଦେହରେ, ଗ୍ଲେପା ହୋଇ ଫଳ ଦେହରେ
ଯେମିତି ଆଉ କେହି, କେମିତି କେଜାଣି,
ଆମ ଆଗରୁ ଏଇ ଉପତ୍ୟକାକୁ ଆସିଛି ।

# ମୁଁ ବି ଯନ୍ତ୍ରଣାକୁ

ଯନ୍ତ୍ରଣା ମୋତେ ଯେତେବେଳେ ମୋଡ଼ି କାବୁ କରେ
ମୁଁ ବିକ୍ଷତ ପରାହତ ମାଟାଡର ।
ଉଦ୍ଧତ ଶିଙ୍ଗ ତଳେ ହତମାନ ।

ଯେତେବେଳେ ପିପାସୁ ବାହୁ ମଧ୍ୟରେ ଏକମାତ୍ର ପଣ୍ୟ—
ପିପାସା.
ଏବଂ ଚୁମ୍ବନ ମୋର ଓଷ୍ଠ ପ୍ରତି ବିମୁଖ ।
ଗଳା ଭିତରେ ଠେଲି ଉଠୁଥିବା କୋହକୁ ରୋକି ପାରେନା
ନିଜକୁ କେମିତି ବିସଦୃଶ ଲାଗେ ;
ସେତେବେଳେ ଆଲିଙ୍ଗନର ଚୂଡ଼ୀଗୁଡ଼ିକ ଭଙ୍ଗା ଦେଖିଲି
ଯେତେବେଳେ ଯନ୍ତ୍ରଣା ମୋତେ କାବୁ କରେ
ଏବଂ ମୁଁ ବିକ୍ଷତ ପରାହତ ।

ଯେତେବେଳେ ଯନ୍ତ୍ରଣା ମୋତେ ମୋଡ଼ି କାବୁ କରେ
ଗ୍ଲାସ ଭିତରେ ସମୁଦ୍ରତୀର-ସ୍ୱାକ୍ଷରିତ ଫଟୋ
କେବଳ ଧସ୍ତିବାକୁ ଲାଗେ

ଯେତେବେଳେ ଦିଗନ୍ତ ବିସ୍ତୃତ ରେଲ ଲାଇନ
ଯେମିତି ସମାନ୍ତରାଳ ବିଦ୍ରୂପ
ଏବଂ ଉଜ୍ଜ୍ୱଳ ଜଂଶନ ସୂର୍ଯ୍ୟାସ୍ତର ସେପାରେ ।
କେଶଶ୍ରୀ-ସନ୍ଧ୍ୟା ତଳେ ଭଉଁରିଖେଳା ଆକାଶ-ସିଢ଼ି
ଛୁଡ ପାର ହେଇ ଆହୁର କେତେ ଦୂର କଏ ଜାଣେ ?
ମାତ୍ର ଗୁଣିଟି ଅକ୍ଷର ଭିତରେ ମୋର ସବୁ ସ୍ୱପ୍ନ ସେତେବେଳେ ବନ୍ଦୀ,
ଯେତେବେଳେ ଯନ୍ତ୍ରଣା ମୋତେ ମୋଡ଼ି କାବୁ କରେ
ଏବଂ ମୁଁ ବିକ୍ଷତ ପରାହତ ।

କିନ୍ତୁ ଯନ୍ତ୍ରଣାକୁ ମୁଁ ଯେତେବେଳେ ମୋଡ଼ି କାବୁ କରେ
ଯେତେବେଳେ ପାଖ ଚୂଲିରେ ଦି ହାତ ସେକେଁ
ଏବଂ ସ୍ଫୁଲିଙ୍ଗରେ ଫୁଲ ଫୁଟାଏ
ମନୋହର ଦୂରତ୍ୱରେ ଯେତେବେଳେ ମୁଁ ବଡ଼ ହୋଇଉଠେଁ,
ମୋର ଯନ୍ତ୍ରଣାର କଳାଚଢ଼ ଉପରେ
ଅନାରକଲି-ଝୁଆଁ ଟୁଂ ଟାଂ ବାଜେ ।
ବଞ୍ଚନାକୁ ବେଶ ଭଲ ଲାଗେ
ଯେମିତି କପୋଳ-କଳ୍ପନାର ସହଚରୀ
ଯେତେବେଳେ ଅଡଥ ଆଖିର ଭରପୂର ବିରହ
ଯନ୍ତ୍ରଣା ସଙ୍ଗେ ଯନ୍ତ୍ରଣାର ସଙ୍ଗମ ଘଟାଏ ।

ଯନ୍ତ୍ରଣା ମୋତେ ମୋଡ଼ି କାବୁ କରେ
ମୁଁ ବି ଯନ୍ତ୍ରଣାକୁ ମୋଡ଼ି କାବୁ କରେ ।

## ତୁମେ ଗୋଟାଏ ମିଛୁଆ

ମୁଁ ଚାଲିବାକୁ ଚାହିଁ ନ ଥିଲି,
କିନ୍ତୁ ତୁମେ ଛାଡ଼ିଲନି, ତୁମ ସଙ୍ଗେ ଏକଲା ଅନେକଟା ବାଟ ଚଲେଇଲ ।
ଏବଂ ଚାଲିବା ସଙ୍ଗେ ଯୋଡ଼ିଦେଲ ଲାଲମାଟିର ପଥ,
ଢାଳିଦେଲ ଆକାଶରେ ଏକ-ଆକାଶ ତାରା, କୁଡ଼ାରେ ରଙ୍ଗକରବୀ,
ଏକ ଅନର୍ଗଳ ଭାବନାସ୍ରୋତ କଥା ।
ଯେମିତି ଚାଲିବା ପାଇଁ ନୁହେଁ
ଏସବୁ ପାଇଁ ।

ତୁମେ ଗୋଟାଏ ମିଛୁଆ, ଗୋଟାଏ ମିଛୁଆ ।
ମୁଁ କ୍ଳାନ୍ତ ନ ଥିଲି, ମୁଁ ଶୋଇବାକୁ ଚାହିଁ ନ ଥିଲି
ଛାଡ଼ିଲ ନାହିଁ, ଶୁଆଇଲ,
ଏବଂ ଶଯ୍ୟା ସହିତ ଦେଲ ନୀଳ ବଲ୍‌ବ,
ବିଛେଇଲ ମଲ୍ଲୀ, ସୁଇଟ୍-ପି ଏବଂ କେଉଁଠୁ କେଜାଣି
ଇଭନିଂ-ଅଫ୍-ପ୍ୟାରିସ ଓ ନରମ ଯୂଇ ।
ଯେମିତି ଶୋଇବା ପାଇଁ ନୁହେଁ
ଏସବୁ ପାଇଁ !
ତୁମେ ଗୋଟାଏ ଭଣ୍ଡ, ଗୋଟାଏ ଭଣ୍ଡ ।

ମୁଁ ଦେବାକୁ ଚାହିଁ ନ ଥିଲି
କିଛି ଶୁଣିଲନି, ପ୍ରାପ୍ୟ କାଢ଼ି ନେଲ ।
ନେଲ ଆଲବମରୁ ଫଟୋ, ବ୍ୟାଗରୁ ରୁମାଲ, ଗ୍ରନ୍ଥରୁ ଚିଠି,
ଏବଂ ନେଲ ମୋର ଆପାଦ ମସ୍ତକ ପ୍ରାପ୍ୟ ଲୁଣ୍ଠ କରି ।
ପରିବର୍ତ୍ତେ ଉପହାର ଦେଲ ରଙ୍ଗୀନ ଏକ ରୂପକଥା—ପ୍ରୀତି
ଏବଂ ସ୍ୱାଦହୀନ, ବର୍ଣ୍ଣହୀନ ଏକ ଛଳନା—ହୃଦୟ ।
ଯେମିତି ନେବା ପାଇଁ ନୁହେଁ,
ଏସବୁ ପାଇଁ ।
ତୁମେ ଗୋଟାଏ ମିଛୁଆ, ତୁମେ ଗୋଟାଏ ଭଣ୍ଡ ।

# ଏଇ ଦସ୍ୟୁ ଚିଠିଗୁଡ଼ା

ଏଇ ଦସ୍ୟୁ ଚିଠି ଗୁଡ଼ାକ ହାତରୁ ମୋର ମୁକ୍ତି ନାହିଁ ।
ସପ୍ତାହ ପରେ ସପ୍ତାହ ରୁଦ୍ଧ ଶ୍ୱାସ, ମୋ ଗୃହ ଭିତରେ ହୃତ୍‌ପିଣ୍ଡ ଚୁପ,
ସମୁଦ୍ର ଧୂଆଁ ନୀଳ ଖାମ୍ ଲେଟର ବକ୍‌ସକୁ ଅସନ୍ତ
ମୋ ଠାରୁ ଯେମିତି କିଛି ଚାହାନ୍ତି କି, ପ୍ରାର୍ଥନା କରନ୍ତି କି
ଭୟ ଦେଖାନ୍ତି ଜାଣେନା ।
ମୁଁ ଗୋଟାଏ ଖୁମାଣୀ ଟୋକୀ, ଘିବେଁ ଖୋଲିବିନି, ଶୁଣିବିନି,
କଥା କହିବିନି ;
ଘିବେଁ ପଡ଼ିଆରେ ମୁକ୍ତି ମେଳାରେ ଟିକି ଟିକି କରି ଉଡ଼େଇ ଦେଇ ଆସିବି ;
ଇଚ୍ଛାହୁଏ, ଲେଖେ—ଏଇସବୁ ଉଚ୍ଛ୍ୱସିତ ବିଶେଷଣ ମୁଁ ବିଶ୍ୱାସ କରେନା ।

ସପ୍ତାହ ପରେ ସପ୍ତାହ କିଏ ଯେମିତି ନୀଳ ଆକାଶ ଛୁଇଁ ନୋଟିସ ଜାରି କରେ
ସିଲ ମୋହର ଦିଆ ସମନ ମୋ ଦରଜାରେ ଝୁଲିଏ,
ବସନ୍ତ ଋତୁର ଭଲ୍ୟୁଣ୍ଟିୟାରମାନେ ଜିଦ ଧରନ୍ତି,
ମୋର ମନକୁ ଦୁର୍ବଳ କରିବାକୁ ଚାହାନ୍ତି ।
ନେଶା ଡାଲରେ ମଞ୍ଜରୀ, ବେଢ଼ାରେ ବୋଗେନଭିଲିଆ,
ବର୍ତ୍ତିସରେ ମହୁମାଛି
ଯେମିତି ଅଗଣିତ ପତାକା ଓ ନିରବଧି ସ୍ଲୋଗାନ,

ମୋ ମନକୁ ଦଖଲ କରିବା ପାଇଁ ସେମାନେ କ୍ରମାଗତ ଆସୁଛନ୍ତି ।
ମୁଁ ଗୋଟାଏ ଖମୁମାଣୀ ଟୋକା, ଖାଲି ଦେଖିବାକୁ, ଶୁଣିବାକୁ,
ହଁ ନା କାହିଁରେ ମୁଁ ନାହିଁ ।
ସବୁଯାକ ଦସ୍ୟୁତା ଗୋଟାଏ ଗ୍ରନ୍ଥରେ ଗଢ଼ା
ଚିତ୍କାର କରି କହିବାକୁ ଇଚ୍ଛା ହୁଏ, —
ଏସବୁ ମୁଖୋଶ ପିନ୍ଧା ଶବ୍ଦକୁ ମୁଁ ଭୟ କରେ,
'ବସନ୍ତ' 'ଭଲ ପାଇବା' ହୃଦୟ' 'ଯଦିଦଂ ହୃଦୟଂ ମମ,
ଏସବୁରେ ମୋର ଆଦୌ ବିଶ୍ୱାସ ନାହିଁ !
ଖାଲି ଖାଲି ସପ୍ତାହ କଟେ ପୁଣି ଲେଟର ବକ୍ସ ଖୋଲେ
ପୁନଶ୍ଚ ସେଇ ଅବିଶ୍ୱାସୀ ଭୟାନକ ବ୍ୟାପାରଗୁଡ଼ିକ ଘଟେ ।
ସମୁଦ୍ରର ଢେଉରେ ବିପର୍ଯ୍ୟସ୍ତ କଥାଗୁଡ଼ିକ ମୋ ଘରେ ମଥା ରଖନ୍ତି
ମୋ ଠାରୁ ଯେମିତି କିଛି ସ୍ପୃହାନ୍ତି କି ପ୍ରାର୍ଥନା କରନ୍ତି କି
ଭୟ ଦେଖାନ୍ତି ଜାଣେନା ।
ସପ୍ତାହ ପରେ ସପ୍ତାହ ମାସ ପରେ ମାସ ପ୍ରସ୍ତାବ ପରେ ପ୍ରସ୍ତାବ ।
ଘରିର କବୋଷ୍ଣ ଅନ୍ଧକାରରେ ଆକଣ୍ଠ ବୁଡ଼ି ରହି
ମନେ ମନେ ଖସଡ଼ା କରେ ।
ଘରର କାର୍ଣ୍ଣିସରେ ମହୁମାଛି, ବେଢ଼ାରେ ବୋଗେନ ଭିଲିଆ—
ଦସ୍ୟୁ ଚିଠିଗୁଡ଼ିକ ହାତରୁ ମୋର ସମ୍ଭବତଃ ନିସ୍ତାର ନାହିଁ ।

# ଏ ସବୁ କୁହା ଯାଇଥାନ୍ତା

ଏସବୁ କୁହା ଯାଇଥାନ୍ତା
ଫାଟକର ବସନ୍ତ ଲତାକୁ
କମ୍ପା ହ୍ରସ୍ୱ ଫୁଲଦାନର ବାହ୍ୱାଗ୍ର ପତ୍ରକୁ
ଲକ୍ଷ୍ୟ କର—
ଯେମିତ ଖୁବ୍ ଅନାୟାସେ,
ଯେମିତ କେଉଁ ଉଚ୍ଚାରିତ ସ୍ୱଗତୋକ୍ତି ପରି
ନିଜର ଖୁସିକୁ ହାତରେ ଏପାଖ ସେପାଖ
ଗୁଟି ନେଇଁ ନେଇଁ ।

ଏସବୁ କୁହା ଯାଇଥାନ୍ତା
ଘଡ଼ି କଣ୍ଟା ଆଡ଼କୁ ଥରଟିଏ ବି ନ ଚାହିଁ
ଅପରାହ୍ନିକ ଆକାଶର ବାର୍ଣ୍ଣିସ ରଙ୍ଗେ ଗାଧୁଆ
କଫିର ପିଆଲରୁ ବାଷ୍ପ ଉଡ଼ିଗଲେ
ଆଖିରେ ଆଖି ରଖିବା ନ ରଖି
କ୍ଳାନ୍ତିର ବ୍ୟଞ୍ଜନା ସବୁ
ମୁହଁରୁ ପୋଛୁ ପୋଛୁ—
ଏସବୁ ।

ଏସବୁ କୁହାଯାଇଥାନ୍ତା
ଯେମିତ ଏ ସଂସାରେ
କୁହା ଅକୁହାର ଭେଦ ସାମାନ୍ୟ,
ଯେମିତ ସବୁ କିଛି ସ୍ୱତଃସ୍ଫୂର୍ତ୍ତି
ଅଛି, ଯେମିତ ବା
ଶ୍ରୋତା ଖାଲି ଉପଲକ୍ଷ୍ୟ, ବକ୍ତା ତତୋଽଧିକ
ଯେମିତ ପ୍ରେମ ପୁନରୁକ୍ତି,
ବସନ୍ତ ନୂଆ ହେଇ ଛପା ଆଈମାର କାହାଣୀ ପେଡ଼ି ;
ଦାମ୍ବଟା ଯେମିତ ଫୁଲଦାନର, ଫାଟକର ବସନ୍ତ ଲତାର, ଜମ୍ବା
ନିଛକ ହାଓ୍ୱାର—
ଏମିତ ଅନାୟାସେ ।

ଏସବୁ କୁହାଯାଇଥାନ୍ତା
ଡଲ୍ଲ ସିଟାରରେ ନମ୍ର, ପେଟ୍ରୋଲର ସୌରଭରେ ଶସ୍ତର,
ମୁଦ୍ରିତ ସଲାପରୁ ଉଦ୍ଧୃତ ପର ନୈର୍ବ୍ୟକ୍ତିକ ;
ଯେମିତ ସହଜେ ରେଜ ଝର୍କା ଖୋଲି ଘରକୁ ଖବର ଆଣେ
ଠିକଣା ଲେଖା ପରେ ଖାମ ବନ୍ଦ କରେଁ
ଜଳର ଗୁଦରରେ ହାଓ୍ୱା ଖେଳଗଲେ
ଖୁସି ହୁଏଁ, ସେମିତ ସହଜେ
ଏସବୁ, ଏସବୁ, ଏସବୁ ।

# ତୁମେ ଶୁଣିବାକୁ ଚାହଁନା

ତୁମେ ଶୁଣିବାକୁ ଚାହଁନା—
କେଉଁଠି ଯେମିତି ଏକ ଅନ୍ଧ ବତାସ କାନ୍ଦ ବୁଲେ
କେବେ କେଉଁ ଉଷାକାଳେ ପଦ୍ମକଢ଼ିର ନିଦ ଭାଙ୍ଗିଥିଲା
ସେଇ ପଦ୍ମର ତୃଷ୍ଣାରେ ସେ ଅସ୍ଥିର ।

ତୁମେ ଶୁଣିବାକୁ ଚାହଁନା—
ବେହେଲାର ଦେହ ଛୁଇଁ ଏତେ କିଆଁ କରୁଣ କ୍ରନ୍ଦନ
ଝଡ଼ର ସନ୍ଧିରେ କିଆଁ ଏକ ଦେବଦାରୁ ଶାଖା
ଭୂଇଁ ପ୍ରତି ନଇଁ ନଇଁ ଆସେ
ସମୁଦ୍ର ପିଟଇ ମଥା କିଆଁ ଏଇ ଶୁଖିଲା ବାଲିରେ ।

ତୁମେ ବୁଝିବାକୁ ଚାହଁନା
ଏତେ ଏତେ ଯୁଇ ଫୁଲ ପୃଥିବୀର ଲୋଡ଼ା କି ହୁଅଇ,
ଫାଲ୍‌ଗୁନ ଆଶ୍ୱିନ ଦେଇ କି ହେବ ଆମର,
କିବା ହେବ ଗୀତ ଗାଇ, ଏ ସୃଷ୍ଟିକୁ ଉପଶାନ୍ତ କରି ?

ତୁମେ କହ୍ବାକୁ ଚାହଁ ନା
ଉତ୍ତର ଆକାଶେ କଆଁ ତାରା ଏତେ,
ଲଭି ବି ଲଭେନା କଆଁ ନନ୍ଦନର ପ୍ରକମ୍ପିତ ଶିଖା,
ପୃଥିବୀର ସବୁ ବେହେଲରୁ ସବୁ ତାରାଙ୍କୁ ଛୁଡ଼ାଯାଇ ପାରେନା ବି କଆଁ ।

ତୁମେ ମାନିବାକୁ ଚାହଁ ନା
ତୁମେ ବୁଝିବାକୁ ଚାହଁ ନା-
ତୁମେ ଶୁଣିବାକୁ ଚାହଁ ନା ।

# ବାଙ୍ମୟ

ବୃକ୍ଷ ତୁମେ କେଉଁଠୁ ? ତୁମର କି ଭାଷା ?
ରୌଦ୍ର ଦଗ୍ଧ ସ୍ୱର ତୁମର ସ୍ୱର ବର୍ଣ୍ଣ ।
ମୂଳରୁ ଉତ୍ଥିତ ତୁମର ଫଳ
ପ୍ରାଚୀନତମ ସଙ୍ଗୀତ ।

ତୁମେ ଗମ୍ଭୀର, ତୁମେ ବିଦ୍ୟମାନ ।
ନଦୀ, ତୁମେ କେଉଁଠୁ ? ତୁମର କି ଭାଷା ?
ମଇଳା ଧୂଆ ତୁମର ତୃଷ୍ଣା, ମହାଦେବଙ୍କ ଜଟାରୁ ।
ତୁମେ ସ୍ରୋତ ଭିତରେ ସ୍ରୋତସ୍ୱିନୀ
କଲକଣ୍ଠ ;
ତୁମେ ପ୍ରାଣବନ୍ତ, ତୁମେ ବହମାନା ।

ବୃକ୍ଷ, ଆମେ ଫଳ ପ୍ରତ୍ୟାଶୀ
ନଦୀ, ଆମେ ମଳ—ପ୍ରତ୍ୟାଶୀ
ଆମେ କେଉଁଠୁ ? ଆମର କି ସ୍ୱପ୍ନ ?

# ଉତ୍କଳ ଜଂଶନ

ବାରମ୍ବାର ଟ୍ରେନ ଆସି ଠିଆହୁଏ ଉତ୍କଳ ଜଂଶନେ
କେଜାଣି କଏ ଓହ୍ଲାଏ ?
ଦ୍ୱିପ୍ରହର ନିଦାରୁଣ ଜୁନ
ଅପ୍ ନା ଡାଉନ ?
ମୋ ହୃଦୟ ସୁଖହରା
କାଲେଣ୍ଡର ମିଛୁଆ ମିଛୁଆ

# ଶେଷ ବନ ଭୋଜି

ତୁମେ ମୋତେ ନାମ ଧରି ଡାକିଲ, ଯେମିତି ପ୍ରଥମ,
ଏବଂ ସେତିକିବେଳେ ମୋ ହାତର
ପାଞ୍ଚଟା ଆଙ୍ଗୁଳି ଝିମ ଝିମ ହୋଇ ଉଠିଲା,
ତୁମକୁ ଗୁଳି କରିଲି ।

ତୁମେ ଏବେ ପରଛଡ଼ା ମୁର୍‌ଗୀ, କଂସ୍ୱରୀ
ବାଲି ଉପରେ ତୁମର ସଙ୍କୁଚିତ ମୁହଁ
ଏବଂ ମୁଁ, ବାଷ୍ପସ୍ନାନ ଚକ୍ଷୁ ମୁଖାମୁଖି
ତୁମର ଅସ୍ଥିର ଆଙ୍ଗୁଳିରେ ସଦ୍ୟ ବାରୁଦର ଧୂଆଁ
ତୁମର ତୃପ୍ତି
ଏବଂ ମୋ ମନରେ ଆପାଦ ମସ୍ତକ ଭୟ ।

ତାହେଲେ
ଏଇ ଆମର ଶେଷ ବନଭୋଜି ।
ବାରୁଦର ସମୁଦ୍ରରେ ତୁମର ଭେଳା ଭସେଇ ଦେଲି ।
ତୁମେ ଜାଣ ଏଇ ଭଲପାଇବା ଦିନେ ତୁମକୁ ନେଇଯିବ ଶ୍ମଶାନକୁ
ଏବଂ ମୋତେ ବି ।

କିନ୍ତୁ ପିକ୍‌ନିକ୍‌ର ଅପରାହ୍ଣରେ ତୁମେ ଏକଦମ ଅବୁଝା
ତୁମ ରକ୍ତରେ ବସନ୍ତକାଳ ଏବଂ
ହାତ ଘଣ୍ଟାରେ ଛୋଟ କଣ୍ଟା ଉପରେ ବଡ଼ କଣ୍ଟା ;
ତୁମର ଅବୁଝା ପେଶୀ ଭିତରେ ମୁଁ ଠେକୁଆଠୁଁ ବି ନରମ ;
ତୁମେ ମୋତେ ଖୁନ କରିବାକୁ ବାଧ୍ୟ କଲ ।
ତୁମେ ଏବେ ସ୍ଥିର, ମୁଁ ଅସ୍ଥିର ।
ମୋ ପାଇଁ ଭାବନା,
ମୋତେ ଶେଷଥର ପାଇଁ ଭାବିବାକୁ ଦିଅ ।

ବିଶ୍ୱାସ କର ମୋର ଅବସ୍ଥା ଭଲ ନୁହେଁ ।
ମୁଣ୍ଡ ଉପରେ କୌଣସି ଛପର ଆଉ ନିରାପଦ ନୁହେଁ
ଏବେ ମୋର ସମସ୍ତ ମନ୍ତବ୍ୟ ପଛରେ ।
ତୁମେ ଶାନ୍ତ, ହୁଏତ ସୁଖୀ ;
ଏବଂ ମୋ ମନରେ ଆପାଦ ମସ୍ତକ ଭୟ ।
ଆଙ୍ଗୁଳି ଭିତର ଫାଙ୍କ ଦେଇ ଯଦି ପଳେଇ ପାରିଥାନ୍ତି
କ'ଣ ହୋଇଥାନ୍ତା ?
ତା ହେଲେ ବି ପୁନଶ୍ଚ ତୁମେ, ପୁନଶ୍ଚ ମୁ ।
କାଲି, ପନ୍ଦର ଦିନ, ବା କୌଣସି ପିକ୍‌ନିକ୍‌ର ବେଳ ଓଳି ।
ଯେତେବେଳେ ତୁମ ହାତରେ ପ୍ରତିହିଂସା ଫିକ୍‌ସଡ୍ ରେଟ
ଏବଂ ମୁଁ ପାପୀୟସୀ, ମୁଖୋସ ଭିତରେ ମୋ ମନ,
ଏବଂ ମନ ଭିତରେ ଛଦ୍ମବେଶ
ତୁମେ ନପାଇ ନପାଇ ଦରାଣ୍ଡି ଦରାଣ୍ଡି

ଅବଶେଷେ ଗୁଳି କରିଥାନ୍ତି ନିଷ୍ଟୟ
ମୁଁ ତୁମକୁ ସେ ସୁଯୋଗରୁ ବଞ୍ଚାଇ ଦେଲି ।
ତୁମେ ଏବେ ନାହିଁ, ଜାଣେନା ହୁଏତ ଅଛ,
କିନ୍ତୁ ମୋ ମନରେ ଆପାଦମସ୍ତକ ଅଶସ୍ୱିସ୍ୱ ଭସ୍ମ—
ଯରେ ଭଲ ପାଇବା ନିକଟରେ ଘୃଣା ହାରି ମାନିଥାନ୍ତା
ଯରେ ତୁମକୁ ନାମ ଧରି ଡାକିଥାନ୍ତି ।

# ସଂଧ୍ୟାର କଳହ୍ରଦରେ

ପଳେଇଲ କାହିଁକି ?
ଲଜ୍ଜା ? କ୍ଷୋଭ ? ଆତ୍ମଗ୍ଲାନି ?
କୌଣସି ପ୍ରୟୋଜନ ନ ଥିଲା ।
ନିଜକୁ ମିଛଟାରେ ଅପରାଧୀ ଭାବିଲ ।
କେହି ମୋତେ ଠକେଇ ପାରିନି ।
ମୁଁ ନିଜେଇ ଠକିଛି,
ଆଖିରୁ କାନ୍ଦଣାର ଏବଂ
ମନରୁ ଭଲ ପାଇବାର
ସମସ୍ତ ଦାଗ ପୋଛି ଦେଇଛି,
ଏବେ ତୁମେ ନିରାପଦରେ ଫେରି ଆସି ପାର,
ଆସିଲେ କୌଣସି ଆଶ୍ଚର୍ଯ୍ୟ ଦେଖିବାକୁ ପାଇବନି
ଦେଖିବ ଦରଜାରେ ମୁଁ ନିରୁଚ୍ଛ୍ୱାସ ଠିଆ ହେଇଛି ।

ସିଡ଼ିର ପଦାବଳୀ ଜିମ୍ବା ଶଠି ବାକ୍ସରେ ଅଭିସାର
କେଉଁଠି ମୋର କିଛି ସୁଖ ନାହିଁ ।
ରେଡିଓର ଗୀତ, ରାତିର ଝରକା, ସବୁ ଛନ୍ତ

ଏବଂ ଏକୁଟିଆ ଦ୍ୱିପହର ଦୀର୍ଘ ସାହାରା
ତୁମେ ସ୍ୱଚ୍ଛନ୍ଦରେ ମୋତେ ଅପମାନ କରିଯାଇ ପାର

ପ୍ରୀତି ବା ତାର ଅଭିନୟ କିଛି ଲୋଡ଼ା ନାହିଁ
କିଛି କଠିନ ଦାବୀ ବି ଆଉ ରଖିନି ।
ନିଜକୁ ମୂଳରୁ ଏକଦମ ଓପାଡ଼ି ଦେଇଛି,
ମୋର ଶିରା ଉପଶିରା ଏବେ ସାଦା
ଯେମିତି ଏକ ରୂପକଥା ସ୍ୱପ୍ନ ମହାଦେଶରେ ମୁଁ ରାଣୀ
ବିବର୍ଣ୍ଣ ବିସ୍ୱାଦ ।

ଆଖିର ସ୍ୱପ୍ନଗୁଡ଼ିକୁ ତଳେ ଓହ୍ଲେଇ ଦେବା ପରେ
ତୁମର ଅସଲ ମୁହଁ ମୁଁ ଦେଖି ପାରୁଛି ।
କୌଣସିମତେ ବିଶ୍ୱାସ କରି ପାରୁନି
କଲିଂବେଲର ଶବ୍ଦ ପାଖରେ ମୁଁ ଏ ପର୍ଯ୍ୟନ୍ତ ରାଣୀ ଥିଲି
ଏତେଦିନ ମିଥ୍ୟାବାଦୀ ଅକ୍ଷରଗୁଡ଼ିକୁ ଜପ କରୁଛି ମନ୍ତ୍ର ପରି,
କୂଅରେ ମୁଁ ସମୁଦ୍ର ଦେଖିଛି ଯୁଗ ପରେ ଯୁଗ ମୁଗ୍ଧ ହୋଇ ।

ଭଣ୍ଡ ରତ୍ନମାନଙ୍କୁ ଶାସ୍ତି ଦେବା ପାଇଁ
ମୁହଁ ଫେରେଇ ବସିଥିଲି ସାରାଦିନ
ଏବେ ସନ୍ଧ୍ୟା ବେଳେ ପୁଣି ଜାନକୀ ଇଚ୍ଛା ନେଇ
ଆସିଛି ପାତାଳର ଉପକୂଳେ,
ହ୍ରଦ ଜଳରେ ଧଳା ରୋଇଂ ବୋଟ ଭାସୁଛି

ପ୍ରାଚୀନ ଇତିହାସ ଚପୁଡ଼ା ଶବମାନେ
ଆକାଶରେ ବିଛେଇ ଦେଇଛନ୍ତି ଛୋଟ ଛୋଟ ଢେଉ,
ଇଚ୍ଛାହୁଏ, ନିଜକୁ ବ୍ଲଟିଂ ପେପରର ଟୁକୁରା ପରି
ଭସେଇ ଦେବ ।
ପଳେଇଲ କାହିଁକି ?
କୌଣସି ପ୍ରୟୋଜନ ନ ଥିଲା ।

## ଶୂନ୍ୟ ପୂରଣ

ଗୋଟାଏ ଶୂନ୍ୟକୁ ନେଇ ବଡ଼ ବିପଦରେ ପଡ଼ିଛି—
ସାମାନ୍ୟ ଗୋଟାଏ ଶୂନ ପୂରେଇ ପାରୁନି ।
ଶାନାଇ ବାଲାକୁ ନେଇ ନହବତ ବଜେଇଲି
ଉତ୍କଳ ଉଠା ରାଗିଣୀ ଶୂନର ପରିଧି ଟିକଏ ଛୁଇଁଗଲା
କିନ୍ତୁ ଶୂନକୁ ହଟେଇ ପାରିଲା ନାହିଁ ।
କଣ କରିବି ଏବେ ? ଆଚ୍ଛା, ଟିକଏ ରୁହ ।
ବାଁରେ ଗୋଟିକ ପରେ ଗୋଟିଏ ସଂଖ୍ୟା, ଲେଖିଗଲେ କେମିତି ହୁଅନ୍ତା
ଦଶକ, ଶତକ, ସହସ୍ର, ଅୟୁତ ଲକ୍ଷ, ନିୟୁତ, କୋଟି
କି ବିରାଟ ଏକ ସଂଖ୍ୟା, ଯେମିତି ଏକ ଦର୍ପିତ ସାମ୍ରାଜ୍ୟର ବଜେଟ୍ !
ମନେ ହୁଏ ଏଥର ଶୂନକୁ ଖୁବ୍ ଜବଦ କରାଯାଇଛି
ଗୋଟାଏ ବଡ଼ ବେଡ଼ି ଯେମିତି ତା ଗୋଡ଼ରେ ଦେଇଛି ।

ସେଇ ସଂଖ୍ୟାର ସମୁଦ୍ରରୁ କ୍ରମେ ବାହାରି ଆସିଲା
ଆକାଶଛୁଆଁ ଘର, ସମୁଦ୍ରକର୍ଷୀ ଜାହାଜ,
ଗଞ୍ଜ, ଦୁର୍ଗ, ମନ୍ଦିର ରଙ୍ଗମଞ୍ଚ ;
କିନ୍ତୁ କି ସର୍ବନାଶ ! ପ୍ରତ୍ୟେକ ଭିତରେ ଅସଂଖ୍ୟ ଫାଙ୍କ
ଆହୁରି ଅସଂଖ୍ୟ ଶୂନ

ଯେମିତି ଛଳନା ଭିତରେ ଛଳନା

ନାଃ

ଏଥର କଲମରେ ଏକା ଆଞ୍ଚୁଡ଼ାକେ
ବାଁ ପଟ ସଂଖ୍ୟାଗୁଡ଼ାକ କାଟିଦେଇ
ପୁନଶ୍ଚ ସେଇ ଆଦିମ ଶୂନଟାର ମୁଖାମୁଖି ହେଲି ।
ମନରେ ଗୋଟିଏ ପାଞ୍ଚ ପାଞ୍ଚିଲି
ଏଥର ଶୂନର ଡାହାଣରେ ଗୋଟିକ ପରେ ଗୋଟିଏ ସଂଖ୍ୟା
ଲେଖିଲେ ତ ମନ୍ଦ ହେବନି ?
ଦଶମିକ, ଶତମିକ, ସହସ୍ରମିକ
ସଂଖ୍ୟାଟା ଶ୍ରେଣ୍ଟ ହେଉ ହେଉ ଏକଦମ ଅଣୁବୀକ୍ଷଣର ରେଞ୍ଜ
ପାର ହୋଇ ଯାଇଛି ।

ବାଃ ବେଶ ତ ?
ଏଥର ଶୂନକୁ ଖୁବ ସରୁ ବୋତଲରେ ଭରି ଜବ୍ଦ କରାଯାଇଛି ;
ଭାବି ଖୁବ ତୃପ୍ତି ହେଉଥିଲି
କିନ୍ତୁ ହଠାତ୍ ଏକ ପ୍ରଚଣ୍ଡ ଶବ୍ଦରେ ତୃପ୍ତିର ବୋତଲ ଭାଙ୍ଗି ଚୂରମାର
ଅଦୃଶ ସଂଖ୍ୟା ଭିତରେ ଅଦୃଶ୍ୟତର ଶୂନଟା
ପାରମାଣବିକ ବିସ୍ଫୋରଣରେ ଗର୍ଜିଉଠିଲା—
ଦେଖେଁ ସଂଖ୍ୟାର ଶରଶଯ୍ୟାରେ ପିତାମହ ଶୂନ ଶୋଇଛନ୍ତି
ତାଙ୍କୁ ହଲେଇ ହଉନି ।

ଗୋଟିଏ ଶୂନକୁ ନେଇ ବଡ଼ ବିପଦରେ ପଡ଼ିଛି ।

# ମୁରଗୀ ଭୋରରୁ ଚାଲିଯିବି

ମୁରଗୀ-ଡକା ଭୋରରୁ ମୁଁ ତୁମର ଶଯ୍ୟା ଛାଡ଼ି ଚାଲିଯିବି
ତୁମର ଟେକ୍ନିକଲର ସ୍ୱପ୍ନରୁ ବାହାରି
ଉଦ୍ୟାନର ରଙ୍ଗୀନ ସ୍ତବକରେ ଛେପ ଛାଟି
ତୁମର ଶୂନ୍ୟ ଦମ୍ଭ ଲେମଣ ଆତତାୟୀ ଛାତରେ ହାହାକାରର ଗଣ୍ଠି ଖୋଲି
ମୁଁ ଅନାୟାସେ ଚାଲିଯିବି ।

ମୋର ଲକ୍ଷ୍ମୀପାଦର ଚନ୍ଦ୍ରଗୁଡ଼ିକୁ ତୁମର ବାରଣ୍ଡାରୁ ପୋଛିବ ନାହିଁ
କାନ୍ଥରେ ମୋର ଛିନ୍ନ ପତ୍ରର ତାଲ-ତଣ୍ଡୁଳ ଟିକି ଟିକି ଟୁକୁରା
ପୋଷା ପାରାବତ ପରି ପବନରେ ଉଡ଼ି ଉଡ଼ି ଆସିବ ;
ମାଟିନି ଶୋ'ର ଜୋଡ଼େ ବାଲକୋନି ଟିକେଟ, ଦେଖିବ
ମେହଗାନି କାଠର ଡ୍ରୟାରରେ ଦପ୍ ଧପ୍ କରୁଛି—
ଇଚ୍ଛା ହେଲେ ଯିବ, ସଙ୍ଗିନୀ ପାଇବ
ପାଇବନି କେବଳ ଶୂନ୍ୟ ପ୍ରାପ୍ତିର ବାଲିଚରେ, ମରୀଚିକାର ଆଲୋକରେ
ଆର୍ସି ଭିତରେ ସ୍ଖଳିତ ମୋର ଛାୟା
ନିଦ୍ରାର ଘଣ୍ଟାଟିପ ଛଡ଼ାଇ ପୋଖରୀ ଡେଇଁ
ରେଲ ଲାଇନ ଭିକରେ ମୁଁ ସେତେବେଳେ ଅଦୃଶ୍ୟ ।
ମୁରଗୀ-ଡକା ଭୋରରୁ ମୁଁ ତୁମର ମଶାରି କାଟି ବାହାରିଯିବି
ଯେମିତି ପ୍ରଜାପତି ଶୂକକୀଟର ମୋହାନ୍ଧକାର ଭିତରୁ ବାହାରିଯାଏ,
ତୁମକୁ ବୋକାବନେଇ ଅନେକ ଦୂର ଚାଲିଯିବି

ଯେଉଁଠୁ କେହି କେବେ ଡାକ କବାବ ପାଏନା
ଯେଉଁଠି ସବୁ ଧ୍ୱନି ହିଁ ପ୍ରତିଧ୍ୱନି ।
ହସ୍ତରେଖା ଶୂନ୍ୟ ହାତପରି ମୁଁ ସେତେବେଳେ ଭାଗ୍ୟ ନିୟନ୍ତ୍ରଣର ସେପାରିରେ
କବୋଷ୍ଣ ଉତ୍ତାପରେ ବାଷ୍ପୀଭୂତ ମୋର ସ୍ମୃତି
ଡାହିକ ଦ୍ୱିପହରେ ଏକୁଟିଆ ମେଲାକୁ ହୁଏତ ଫେରି ଆସିବ
ଘରଚଟିର ବସାରୁ କାଠି କୁଟା ଆସି ପଡ଼ିଥିବ କି ନା ଜାଣେନା
କିନ୍ତୁ ମୁଁ ତୁମର ଦାମ୍ପତ୍ୟିକ ଦ୍ୱିତଳକୁ ସ୍ୱର୍ଣ୍ଣ ସୀତା ହୋଇ ଫେରି ଆସିବିନି,

ପୋଖରୀର ମାଛମାନଙ୍କ ପରି ପବିତ୍ର ଶୀତଳରେ ପଡ଼ିବାକୁ ହେଲେ
ତୃଷ୍ଣାକୁ ହାତ ପାତିବା ଚଳେନା, ତେଣୁ
ତୁମର ଅତୃପ୍ତ ବାହୁର ବେଢ଼ା ଡେଇଁ, ତୁମର ପେଶୀର ଆକାଙ୍କ୍ଷାକୁ
ହେୟ କରି,
ଖଦ୍ୟୋତ ଓ ନକ୍ଷତ୍ରେ ନିବେଦିତ ଗ୍ରନ୍ଥିର ଘଟ ଖପରିଲ ସହିତ ମିଶେଇ
ତୁମର ବିଧ୍ୱସ୍ତ ନାଟକର ଆଖଡ଼ା ଚୂରମାର କରି
ମୁଁ ଅନାୟାସେ ଚାଲିଯିବି ।
ବଗିଚାରେ ପଡ଼ି ରହିବେ ଦଳେ ଝିଙ୍କାରି
ପୌନଃପୁନିକ ସ୍ମୃତିର ନିର୍ମମ କୋରସ
ଏବଂ ତୁମର ନିର୍ଜୀବ ଦମ୍ଭର ଲଳିତ ମୁଖୋସ
ପରିତ୍ୟକ୍ତ ପାଇଜାମା ପରି,
ଯେବେ ମୁରଗୀଡାକ ଭୋରୁ ତୁମର ଶଯ୍ୟା ଛାଡ଼ି ଚାଲିଯିବି ।

# ଅସ୍ଫୁଟ ବାରୁଦ

ଗୁଳି କରେଁ, ଅସ୍ଫୁଟ ବାରୁଦ କଥା କହେନା,
ମ୍ରିୟମାଣ ଆଂଗୁଳି ସନ୍ଧାର ହଳଦୀରେ ଅସ୍ପଷ୍ଟ,
ପଛରେ ଅନେକ ଅନେକ ଶତାବ୍ଦୀ ଏବଂ ଅନଷ୍ଟୁସ୍ତୁ ଢେଉ, ହତ୍ୟାକାଙ୍କ୍ଷୀ ମୁଁ,
ଏବଂ ମୋର ରକ୍ତାକ୍ତ ଶବ୍ଦ ଅନୁସରଣ କରେ ଅନେକ ପଦଶବ୍ଦ !
ଆଉ ଶବ୍ଦ ପଛରେ ଉଚ୍ଛିଷ୍ଟଭୁକ କୁକୁର ପରି
ଦଳେ ଗଳ୍ପଖାଦକ ଶର୍ଟହେଣ୍ଡ୍‌ପଟୁ ରିପୋର୍ଟର ଅଷ୍ଟର୍ଯ୍ୟ ।
ଗୋଟାଏ ବାରୁଦଗନ୍ଧୀ ଶବ୍ଦକୁ ଝାମ୍ପି ନେବାପାଇଁ ସାରା ସଂସାର ଉତ୍ତେଜିତ ।

ଗୁଳି କରେଁ, ଅସ୍ଫୁଟ ବାରୁଦ କଥା କହେନା.
କଥା କହିବା ତାର ସ୍ୱଭାବ ନୁହେଁ, ତାର ସ୍ୱଭାବ ହତ୍ୟା କରିବା,
ସ୍ତବ୍ଧ କରିବା ।
ସର୍ବଶକ୍ତିମାନ ବାରୁଦ ଯେପରି ଈଶ୍ୱର, ଏକ ମୁହୂର୍ତ୍ତେ
ଫୁଲତୋଡ଼ା ପରି ଉଦ୍ଭାସିତ ମୁହଁ ଗୁଡ଼ିଏ
ଡିନର ଟେବୁଲରୁ ଟାଣିଆଣି
ଶୋକର ସମୁଦ୍ରରେ ଭସେଇଦିଏ, ଭଙ୍ଗା ମାସ୍ତୁଲର ଟୁକୁରା ।
ଅସମାପ୍ତ ପ୍ରୀତି ଭୋଜର ମଝିରେ ଶ୍ରେଣନ ଶୌକର ସୁରରେ
ବିଷ ଢାଳିଦେଇ

ସର୍ବନାଶା ଟେଲିଗ୍ରାମଟି ଆଖିକୁ ଛାଟ ମାରେ ।
ଗୁଳି କରେଁ, ଅଗ୍ନି ପରି ପବିତ୍ର ଆଉ ଅଛି କଣ ?
ଯେଉଁ ଅଗ୍ନି ଦେବତାଙ୍କ ନାମରେ ଉତ୍ସର୍ଗୀକୃତ ଏଇ ମୋର ଆଗ୍ନେୟାସ୍ତ୍ର ।
ଅସ୍ତ୍ର ନା ଆଗ୍ନେୟଗିରି ?  ଯାର ଉଦ୍‌ଗୀରଣେ ପ୍ରାସାଦ, ପାର୍ଲାମେଣ୍ଟ,
ପାଠଶାଳା ନିମିଷେ  ପାଉଁଶ ?
'ଅଗ୍ନେ ନୟ ସୁପଥା ରାୟେ ଅସ୍ମା'ନ୍'—
ହାୟ ସୁପଥ ! ଜଗତ ସଂସାର ଯେତେବେଳେ ବିପଥଗାମୀ, ଓଲଟ ପାଲଟ,
ସେତେବେଳେ ସୁପଥର ଏକମାତ୍ର ଚାଳକ ତୁମେ—ବାରୁଦର ଈଶ୍ୱର ।
ଗୁଳି କରେଁ, ଜୀବନେ ଏଇ ପ୍ରଥମ, ଯେହେତୁ
ମୁଁ ପେଶାଦାର ଘାତକ ନୁହେଁ, କଦାପି ହେବନି,
ପବିତ୍ର ପୁରୋଧା ପରି—ନା ଖଡ୍‌ଗ ନୁହେଁ—ହାତରେ ଅଟୋମେଟିକ
ସଙ୍ଗୀତ ଧରି
ଏଇ ପ୍ରଥମ ମନ୍ତ୍ରପୂତ ଜୀବନକୁ ଟାଣି ନେଇ ଯାଉଛି
ବେଦୀରେ ଉତ୍ସର୍ଗ କରିବି ବୋଲି ।

ଏଇ ବେଦୀ ପ୍ରସ୍ତୁତ କରିଛି ଦଶବର୍ଷ ଧରି,
ଏଇ ବେଦୀ ମୋର ମତବାଦ, ମୋର ଭବିଷ୍ୟତ ସମାଜ, ଶତାବ୍ଦୀ ଓ
ମନୁଷ୍ୟତ୍ୱର ସେତୁ—ମୋର ବିଶ୍ୱାସ ।
ଅନେକ ଗ୍ରନ୍ଥ ଘାଣ୍ଟି, ଅନେକ ଆପ୍ତବାକ୍ୟର ବାଲି ସିମେଣ୍ଟ ଫେଣ୍ଟି
ପ୍ରସ୍ତୁତ କରିଛି ଏଇ ନିଶ୍ଛିଦ୍ର ବିଶ୍ୱାସ, ତା ପରେ
ମନ୍ତ୍ରପଢ଼ା ଜୀବନକୁ, ମୋର ସହଚର ବନ୍ଧୁକୁ ଟାଣି ନେଇ ଯାଉଛି
ବେଦୀର ଉତ୍ସର୍ଗ କରିବି ବୋଲି ।

ମୁଁ ଯେ ସିଜାରକୁ କମ ଭଲ ପାଇଛୁ ତା ନୁହେଁ,
କିନ୍ତୁ ରୋମକୁ ଭଲ ପାଇଛୁ ଆହୁର ବେଶୀ,
ଏବଂ ସେଇଥିପାଇଁ ପମ୍ପୈର ମୂର୍ତ୍ତି ତଳେ
ମୋର ଅଟୋମେଟିକ ସଙ୍ଗୀତର ତେଇଶଟି ଗୁଳିରେ ବିଧ୍ୱସ୍ତ
ରକ୍ତାପ୍ଳୁତ ମୋର ବନ୍ଧୁ, ମୁଁ ହତ୍ୟାକାରୀ,
ମୋ ପଛରେ ଅନେକ ଅନେକ ଶତାବ୍ଦୀ, ଏବଂ ଅନସ୍ତଯୁ ଢେଉ ଏବଂ
ମୋର ଆପାଦବିଦ୍ଧ ଶବ୍ଦ ଅନୁସରଣ କରେ ଅନେକ ଅନେକ ପଦଶବ୍ଦ ।
ସେମାନଙ୍କୁ ବାରଣ କରିବା ପାଇଁ କେହି ନାହିଁ, କାରଣ ଏଇ ମୁହୂର୍ତ୍ତେ
ମୋର ଚକ୍ଷୁ ବାରୁଦାଚ୍ଛନ୍ନ, କର୍ଣ୍ଣ ବାରୁଦାପ୍ଳୁତ ଏବଂ ଗୋଇଠି ବାରୁଦରେ
ପ୍ରତିଧ୍ୱନିତ ।

ମୁଁ ଜାଣେନା କିଏ ମୁଁ, କାହିଁକି ମୁଁ,
ମୋର ଦୁଇ ହାତରେ କାହାର ବାଘନଖ ?
ମୁଁ ଜାଣେନା ଏଇ ବିସ୍ଫୋରକ ମୃଗନାଭି
ମୋତେ କେଉଁ ଆର ଦେଶକୁ ଟାଣି ନେଇଥିବ ।
ଅସ୍ପୃଷ୍ଟ ବାରୁଦ କଥା କହେନା,
ମ୍ରିୟମାଣ ଆଙ୍ଗୁଳି ସଧାର ହଲଦୀରେ ଅସ୍ପଷ୍ଟ,
ପଛରେ ଅନେକ ଶତାବ୍ଦୀ ଏବଂ ଅନସ୍ତଯୁ ଢେଉ, ହତ୍ୟାକାରୀ ମୁଁ, ଏବଂ
ମୋର ରକ୍ତାକ୍ତ ଶବ୍ଦ ଅନୁସରଣ କରେ ଅନେକ ପଦଶବ୍ଦ ।

# ମୋତେ ଖୋଲ

ମୋତେ ଖୋଲ ଓଲ୍ଟ ପାଲ୍ଟ କର
ମୁଁ ତୁମକୁ ଶସ୍ୟ ଦେବି,
ମୋତେ ମେଘ ବିଦ୍ୟୁତ୍-ଜଳପ୍ରପାତ ଦିଅ
ମୁଁ ତୁମକୁ ସନ୍ତାନ ଦେବି ।
ମୋତେ ଆଲିଙ୍ଗନ ଦିଅ
ମୁଁ ତୁମକୁ ପ୍ରେମ ଦେବି ।
ମୋତେ କଷ୍ଟ ଦିଅ
ମୋ ଉପରେ ତୁମର ସମସ୍ତ ପରିଶ୍ରମ ରଖ
ମୁଁ ତୁମକୁ ସାଫଲ୍ୟ ଦେବି, ସୁଖ ଦେବି ।
ମୋ ଓଠରେ
ତୁମର ବିସ୍ଫୋରଣ ଘଟୁ
ମୁଁ ତୁମ ପାଇଁ ପ୍ରାସାଦ ତୋଳିଦେବି ତୁମର କଟିଦେଶରେ ।
ଯଦି ମୋତେ କନ୍ଦାଅ
ଏକାକୀ ବସେଇ ରଖ ବିରହିଣୀ ଶ୍ରାବଣେ
ମୁଁ ତୁମକୁ ଅଭିଶାପ ଦେବିନି
ଗୋପନରେ ସିଲେଇ କରିବି ତୁମ ପାଇଁ ଗୋଟିଏ କାମନାର କନ୍ଥା
ମୋତେ ବୁକୁରେ ରଖ
ମୁଁ ତୁମକୁ ସୁଖରେ ରଖିବି ।

# କଲିକତା କଲିକତା କଲିକତା

ଯଦି ସ୍ୱର୍ଗ କେଉଁଠି ଥାଏ—ଆକାଶରେ, ମାଟିରେ, ମାଟିତଳେ
ନା, ସ୍ୱର୍ଗ କେଉଁଠି ନାହିଁ—କିନ୍ତୁ ଅଛି, ଏଇଠି—ଏଇ କଲିକତାରେ
ଅଙ୍କୁରିତା ନାରୀ ଯେ କେଉଁଠି ଲଜେଇଉଠିବ କେହି ଜାଣେନା
ଏବଂ ନିକ୍ଷେପିତ ପୁରୁଷ, ସାହସୀ, ହନ୍ତାରକ,
ଅଛି ନୟନାଭିରାମ ନ୍ୟୁ ମାର୍କେଟ ଏବଂ ସନ୍ଧ୍ୟାଶୋଭୀ ବିପଣୀମାଳା
ଆଉ ସୁନେଲି ମଧୁ ମକ୍ଷିକା ଏବଂ ସେମାନଙ୍କର ମଧୁର ସ୍ୱ ଗୁଞ୍ଜରଣ, ଏବଂ
ଯେ କୌଣସି ଗଳିରେ ଫଳିତ ଜ୍ୟୋତିଷ, ଏବଂ
ଟେବୁଲରେ ଜୋଡ଼ା ଜୋଡ଼ା ତୃଷ୍ଣା—
କଲିକତା !

ଏଠି ବସନ୍ତର ଅନ୍ୟ ନାମ ମ୍ୟୁଜିକ କନ୍‌ଫରେନ୍ସ
ଶରତ୍—ପ୍ୟାଣ୍ଡେଲରେ ମାଇକର ପ୍ରତିଶ୍ରୁତି
ବର୍ଷା—ବସ୍‌ଷ୍ଟାଣ୍ଡର ଗ୍ଲୁସ୍ୟାଲେକ ବା ବର୍ଷାତିର ସ୍ୱଳ୍ପ ପରସର ଭିତରେ
ପ୍ରଥମ ଆଶ୍ଳିଷ୍ଟସାନୁ ପ୍ରେମ ଏବଂ
ଶୀତ—ଆପେଲ, କମଳାଲେମ୍ବୁ ଓ ଅଙ୍ଗୁର ।

ନା, ସ୍ୱର୍ଗ କେଉଁଠି ନାହିଁ, କିନ୍ତୁ ଅଛି ଏଇଠି
ରକ୍ତରେ ଝିଙ୍କାରୀର ସ୍ୱର, ସ୍ୱପ୍ନରେ ଡାୟାଲଟୋନ୍ ଏବଂ ଆଖିରେ ବିମ୍ବିତ

ଯାହାକୁ-ଭଲ-ନ-ପାଇ-ବଞ୍ଚା ଯାଏନା ସେଇ ମୁଁ-ମୁଁ-ମୁଁ
ରହିଛି କବୋଷ୍ଣ ନଦୀ ନିରବଧି ଏବଂ ଉଷ୍ଣ ନାରୀ ଦୁରତିକ୍ରମ୍ୟା
ଅଛି ସଦ୍ୟ ଯୁବକପାଇଁ ପାର୍କ ଓ ରେସ୍ତୋରାଁ
ସଦ୍ୟ ଯୁବକ ପାଇଁ ଯୁବତୀ
ଏବଂ  ଉଭୟ ପାଇଁ ଶହର ମଧ୍ୟ ଫେଣାଟିରେ ଢଆର
ଭାରତ ବିଶ୍ରୁତ କଫି ହାଉସ ।

ନା, ସ୍ୱର୍ଗ କେଉଁଠି ନାହିଁ, କିନ୍ତୁ ଏଠି ଅଛି ମାହ-ଭାଦର ଗଙ୍ଗା,
ଜାଲରେ ମସୃଣ ପେପର ବେକ ପର ରୂପା ଚକ ଚକ, ଇଲିଶି ଏବଂ
ଜଳରେ ଦଳ ଦଳ ପହଁଣା—ଅସଂଖ୍ୟ ନୌକା, ଲଞ୍ଚ
ଦାନ୍ତିକ ସମୁଦ୍ରଙ୍ଗମ ଜାହାଜ ଏବଂ
ହଠାତ୍ ହଠାତ୍ ଅଶ୍ଳୀଳ, ତୀବ୍ର, ମାଦକ ଉପସାଗରର ସୁତୀକ୍ଷ୍ଣ ଶୀଷା
କଲିକତା ।

ଏଠି ଅଛି କଣ, ନାହିଁ କଣ ?
ପିଲଙ୍କ ପାଇଁ ପ୍ଲାନେଟାରିଅମ, ପ୍ରାପ୍ତ ବୟସ୍କଙ୍କ ପାଇଁ ସିନେମା,
ଏବଂ ପଳିତ ବୃଦ୍ଧଙ୍କ ପାଇଁ ଭାଗବତ,
ବନ୍ଧୁଙ୍କ ବନ୍ଧୁତ୍ୱ, ତୃଷାର୍ତ୍ତଙ୍କ ପାଇଁ ପାନୀୟ, ଆଗନ୍ତୁକଙ୍କ ପାଇଁ ରେଶନ ।
ଆପଣ ବିଦେଶୀ ?
ଆପଣ ଏଠି ସୁଖରେ ରହିବେ ।
ଆପଣ ବିଦେଶିନୀ ? ଆପଣ ବି ।
ଯେ କୌଣସି ଆଖି ପାଇଁ କଜଳ,
ଯେ କୌଣସି ପାଇପ ପାଇଁ ଟବାକୋ—

ଯାର ନାଁ କଲକତା ।
ଏଠି ନାହିଁ କଣ ?
ନାୟକ ପାଇଁ ନାୟିକା ଏବଂ ନାୟିକା ପାଇଁ ଇନ୍ଦ୍ରପୁରୀ,
ଆବୃତ୍ତି-ଉପଯୋଗୀ ଆଧୁନିକ କବିତା, ଲଘୁ ସୁର ପାଇଁ ଗୀଟାର
ଛବି ପାଇଁ ପ୍ରଦର୍ଶନୀ ଏବଂ ତା ଉପରେ ସହୃଦୟ ସମାଲୋଚନା ।
ଏଠି ଇଚ୍ଛାର ଶେଷ ନାହିଁ ଇପ୍‌ସିତ ବି ଅନନ୍ତ ।
ବସ୍ତୁ ନନ୍ଦିତ, ଅନିନ୍ଦ୍ୟ ଏଇ ଶୋ-କେସ୍-ସୁନ୍ଦରୀ-ସହରର ନାମ
କଲକତା ।

ଏଇ ସହର ସମସ୍ତଙ୍କୁ ଟାଣେ — ଅହୋରାତ୍ର ।
ଲାଭ ଦେଖେଇ, ଲୋଭ ଦେଖେଇ,
ଲୁକ୍‌କାୟିତ ଇଚ୍ଛାର ଦେହରେ ହାତ ବୁଲେଇ,
ବେଙ୍କର କାଉଣ୍ଟରରେ ନୋଟର ବଣ୍ଡିଲ ଶିକାରୀ ପିସ୍ତଲ ଦେଖେଇ,
ନିଲାମ ଘରେ ହାତୁଡ଼ି ଠୁକି, ବାଟରେ ନୟନାଭ ଆଖିର ଚୁମ୍ବକ
ଦେଇ କେବଳ ଟାଣେ ।
ଟାଲିରେ, ଗଡ଼ିଆ ହାଟରେ, ଧନୁକ-ବଙ୍କା
ଓଭରବ୍ରିଜ୍ ଫ୍ରକ ପିନ୍ଧା ଝିଅକୁ ଟାଣେ,
ଏବଂ ଉନ୍ମାଦନୀ ଲଗ୍ନର ଚକା ଅମନସ୍କ ପଥିକକୁ, ମୃତ୍ୟୁ ଜୀବନକୁ
ରୌଦ୍ର ଗ୍ରୀଷ୍ମାକୁ, ଟ୍ରାମ ଗାଡ଼ି ଅଫିସ ଗାମିନୀକୁ,
ଏବଂ କୋଲ୍ଡ ଡ୍ରିଙ୍କ ତୃଷ୍ଣାକୁ ଟାଣେ ।

ଏଠି ଲେକର ଜଳ ଶାନ୍ତ ଏବଂ ଗମ୍ଭୀର ।
ସେଠି ଭାସମାନ ଧଳା ବୋଟ, ଫାଲଏ ଜୁଲ୍ଏଟର ବୁକେ

ଯେମିତି କଥା କହୁ ଉଠେବ—
"ଆସ ଗ୍ରହି ଆସ ରୋମିଓ, ଆସ ତୁମେ ଗ୍ରହିର ଦବାକର"
ଘାସରେ, ପବନରେ, ଟେଲିଫୋନ ତାରରେ
କମଳା ରଙ୍ଗର ଜୁଲୁଜୁଲା.
ମାଟିରେ ସ୍ତ୍ରୀ ବନ୍ଧୁଙ୍କ ହେଇ ପଡ଼ୁଛି.
ପାଖରେ ବାଦାମ ଖୋପା ଏବଂ ଆଇସକ୍ରୀମ ପଟ
ଏବଂ ଚମତ୍କାର ଶିରଶିର ହାଓ୍ୱା ।
ଯଦି ଲୋକଙ୍କୁ ଆସି ନାହାନ୍ତି ତେବେ ଆପଣ ଏବେ ବି ମା ପେଟରେ ।
ସ୍ୱର୍ଗ କେଉଁଠି ନାହିଁ, କିନ୍ତୁ ଏଠି
ମଇଦାନରେ କିଏ କେବେ ପୋତିଥିଲା ଗୋଟାଏ ସ୍ୱର୍ଗର ମଇ-ମନୁମେଣ୍ଟ,
ଯା'ର ପାଦରେ ମିଟିଂ, ଦେହରେ ଘୂରଣି ସିଡ଼ି, ମୁଣ୍ଡରେ ଛଅ ଋତୁ ।
ଏଠି ସାରା ଦେଶର ଧିକ୍କାର, ରାଗ, ଆହ୍ଲାଦ,
ସାରା ସଂସାରର ଉତ୍ତେଜନା, ମଞ୍ଚ ଉପରକୁ ଉଠେ ।
ଏବଂ ମଣିଷର ସମୁଦ୍ର ଭିତରେ ଏଇ ମେଘ ଛୁଆଁ ମଇ
ଯେତେବେଳେ ଲାଇଟ ହାଉସ
ସେତେବେଳେ ଇତିହାସ ତିଆରି ହୁଏ ।
ସ୍ୱର୍ଗ ଯଦି ଯେଉଁଠି — ନା କେଉଁଠି ନାହିଁ,
କିନ୍ତୁ ଏଇ ପୃଥିବୀର ଭୂଗୋଳରେ ଅନ୍ତହୀନ ଆକାଙ୍କ୍ଷାର
ଅକ୍ଷରେଖାରେ ରହିଛି ।
ଗଙ୍ଗାପରି ପୁଣ୍ୟବତୀ, ମନୁମେଣ୍ଟ ପରି ଐତିହାସିକ
ଦକ୍ଷିଣ ହ୍ରଦ ପରି ସାହସିକା—
କଲିକତା, କଲିକତା, କଲିକତା ।

# ବଙ୍ଗ ଜନନୀ

ଭୂଗୋଳର ବନ୍ଧଟା ଫୋପାଡ଼ି ଦେଇ, ମାନଚିତ୍ରେ ବିରକ୍ତ ମୁଁ
ସିଧା ତୋର ମାଲାକାଣୀ ମୁହଁକୁ ଚାହିଁଲି ।
ତୁ ମୋର ମାଟିମୟୀ ବଙ୍ଗ ମାତା, ମୁଁ ତୋର ସନ୍ତାନ,
ଆମ ମଝିରେ ଦୋଭାଷୀମାନେ ଭିଡ଼ କରନା, ଦରକାର ନାହିଁ ।

ରବୀନ୍ଦ୍ର ସଗୀତ-ପ୍ରତିଫଳିତ ଶ୍ରାବଣ
ଅଜସ୍ର ମେଘଲ-ପଥ୍-ଦୁଧ-ଦୁହାଁ ବୃଷ୍ଟି
ଯା'ର ଭିତରେ ମୋର ଜନ୍ମ, ଏଇ ମୋର ବଙ୍ଗ ଦେଶ,
ଏଇ ଜରଧଡ଼ି ରୌଦ୍ର ପୁଟିତ ଦିବସ ଏଇ ସ୍ୱପ୍ନବାସବଦତ୍ତା ରାତି
ଏଇ ମୋର ବଙ୍ଗ
ଏଇ ଦେଶ ଜନନୀ ।

ପୃଥିବୀର ସମସ୍ତ ଆବେଗ ଦ୍ରବୀଭୂତ କରି
ମାଟିର ଏଇ ସନ୍ଦର ଗନ୍ଧେ ଭରପୂର 'ପଥେର ପାଞ୍ଚାଲୀ' ତୋର ରାମାୟଣ,
ଲାଲ ମାଟିର 'ହାଁସୁଲି ବାଙ୍କେର ଉପକଥା' ତୋର ମହା ଭାରତ,
ଏବଂ ସାତରଜାର ଧନ 'ପଦ୍ମାନଦୀର ମାଝୀ' ତୋର ଶତାବ୍ଦୀର ଶାହନାମା ;
ତୁ ଆମର ରୂପକଥା, ପୁରାଣ, ଇତିହାସ, ତୁ ଆମ୍ଭର ଜୟସ୍ତମ୍ଭ ।

ବଙ୍ଗ ମାଟିର ପ୍ରଲେପ —ଉଜ୍ଜ୍ୱଳ ଶ୍ୟାମବର୍ଣ୍ଣ—ମୋର ସମଗ୍ର ଦେହେ,
କପାଳେ ମଧ୍ୟାହ୍ନ-ଦଗ୍‌ଧ ପ୍ରାଚୀନ ତାମ୍ରଲିପି ;
ମୋ ଗ୍ଲୁତ ଭିତରେ ଯେଉଁ ଗାଢ଼ ତରୁମୂଳର ଆବେଗ,
ଆଖିରେ ଉଡ଼ନ୍ତ ଶଙ୍ଖଚିଲ,

ସ୍ୱପ୍ନରେ ଆମ୍‌ପ୍ଲିଫାୟାରରେ ଭଟିୟାଲି—
ଏସବୁ କିଛି ତୋର ନଦୀର ଚର, ଆକାଶ, ଜଳସ୍ରୋତରୁ
ସିଧା ମୋ ଭିତରକୁ ଉଠିଆସିଛି ।

ବଙ୍ଗଜନନୀ, ତୋର ଚନ୍ଦ୍ରା କପୋତାକ୍ଷ ନବଗଙ୍ଗାର ସ୍ରୋତ ମୋର ରକ୍ତରେ,
ମୋର ଜନ୍ମର ଆଦିକଥା ତୋର ଇତିହାସ ଭିତରେ ନିବଦ୍ଧ,
ମୋର ସ୍ନିଗ୍‌ଧ-ଶ୍ୟାମ, ରୁଦ୍ର-ଉଜ୍ଜ୍ୱଳ, ନଦୀ ପ୍ରତିମା ମା !

ତୋର ବଗିଚାରେ ଏତେ ସୌରଭ, ଫଳରେ ଏତେ ସ୍ୱାଦ,
ତୋର ଅଗଣାରେ ଉତ୍‌କଣ୍ଠିତ ରୌଦ୍ର
ଯେମିତି —ଝିଅ ଭଉଣୀର ଆଖି—ଏମିତି ଆକୁଳ,
ରକ୍ତାଭ ଈଶାନ କୋଣେ ଝଡ଼ର ଏତେ ଦର୍ପ,
କିଷାନର ଗ୍ଲୁତ ଏତେ ସାହାସୀ, ତରୁଣର ପେଶୀ ଏତେ ଆଦର୍ଶପରାୟଣ,
ତୁ ଆମ ସଭିଙ୍କର ଜନ୍ମଦାତ୍ରୀ, ଧାତ୍ରୀ, ଜନ୍ମଭୂମି ।

ବିବାଦ ବିସମ୍ବାଦ, ହତ୍ୟା-ଆତ୍ମହତ୍ୟା, ଈର୍ଷ୍ୟା କଳହ ସବୁ ଶେଷ ହେଲେ,
ଆମେ ବଙ୍ଗର ଭାଇଭଉଣୀ ଈଶ୍ୱରଙ୍କ ନିକଟରେ, ଆଲ୍ଲାଙ୍କ ନିକଟରେ ନତଜାନୁ
ପୁଣି ମୁହଁ ଫେରାଉ ତୋର ଅଭିମାନିନୀ ପଦ୍ମାବତୀ ଭାଗୀରଥୀ ଆଡ଼କୁ ।

ଅନ୍ଧକାର ଯେବେ ଆଲୋକ ଦିଏନା, ପଥ ଦେଖାଏନା,
ତୋର ଦୁଧିଆଲ ଦେହରେ ଅନ୍ଧ ପର ଆଘାତ କରେ,
ତୁ କଥା କହୁନା, ସନ୍ତରୁଣୀ-ବ୍ରତ କାଟୁ ଯନ୍ତ୍ରଣାରେ,
ଆମର ନବାନ୍ନ ତଥିକୁ ଆମେ ଇମିତ ପଠେଇ ଦେଉଁ ;
କିନ୍ତୁ ତୁ ଆମର ସର୍ବଂସହା ଜନନୀ ଆଶାବାଦିନୀ ।

ଭୁଗୋଳେ ବା ମାନଚିତ୍ରେ ତୁ ଅଛୁ କି ନା ଜାଣେନା,
କେବଳ ଜାଣେ ତୋର ନୀଳାକାଶୀ ମୁହଁ ମୋ ମୁହଁ ଉପରେ,
ମୋ ସ୍ୱପ୍ନ ଜାଗରଣ ଜନ୍ମ ମୃତ୍ୟୁ ଉପରେ ତୋ ମୁହଁର ଆଲୋକ,
ମୋର ଇତିହାସ ତୋର ଇତିହାସପଟରେ ଚିତ୍ରିତ,
ତୁ ମୋର ବଙ୍ଗ, ମୋର ଦେଶ ଜନନୀ ମା !